# ଚିଡିଆ ଖାନା

ବୀରକିଶୋର ନାୟକ (ଶାବରକବି)

ଗୀତିକାର (ଆକାଶବାଣୀ, ଦୂରଦର୍ଶନ)

ପ୍ରକାଶକ

ଶୌର୍ଯ୍ୟ ପ୍ରକାଶନ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ଓଡ଼ିଆ ବଜାର, କଟକ-୧

# ଚିଡ଼ିଆଖାନା

ଲେଖକ :
**ବୀରକିଶୋର ନାୟକ,**
**ଘର ନଂ.ଏଲ୍ -୩୫୩**
**ଏଚ୍.ଏ.ଏଲ୍ ଟାଉନସିପ୍**
**ସୁନାବେଡ଼ା-୨**
**ଦୂରଭାଷ :- ୦୬୮୫୩ - ୨୨୩୨୦୬**

ପ୍ରକାଶକ :
**ଶୌର୍ଯ୍ୟ ପ୍ରକାଶନ**
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ଓଡିଆ ବଜାର,କଟକ-୧

ଅକ୍ଷରସଜ୍ଜା :
**ଶୌର୍ଯ୍ୟ ପ୍ରକାଶନ**
ଓଡ଼ିଆବଜାର,କଟକ-୧

୧ମ ସଂସ୍କରଣ : **୨୦୦୪**

ମୁଦ୍ରଣ :
**ପଞ୍ଚସଖା ପ୍ରକାଶନ,**
ସୂତାହାଟ ,କଟକ -୧

ମୂଲ୍ୟ :
**ପଞ୍ଚତିରିଶ ଟଙ୍କା ମାତ୍ର**

*CHIDIAKHANA*

*Written by :*
**Birakishore Nayak**

*Published by :*
**Sourjya Prakashan**
**Publisher & Bookseller**
**Oriya Bazar , Cuttack-1**

*Letter Setting :*
**Sourjya Prakashan**
**Oriya Bazar,Cuttack-1**

**First Edition : 2004**

*Printed at :*
**Panchasakha Prakashan**
**Sutahat,Cuttack-1**

**Price :**
**Rs. 35 /- only**

# ମନର କଥା

ଦୁଇ ହଜାର ମସିହା ଅଗଷ୍ଟ ମାସର କଥା । ମୋର ପିଲାମାନେ (ଦୁଇଝିଅ ଗୋଟିଏ ପୁଅ) କହିଲେ ନନ୍ଦନ କାନନ ବୁଲିଯିବା ପାଇଁ । ପିଲାମାନଙ୍କ କଥା ରଖି ଆମେ ସମସ୍ତେ ଗଲୁ । ଖୁସିରେ ବାରମଜା ଖାଇ ବୁଲି ବୁଲି ନନ୍ଦନ କାନନର ଅନେକ ଜୀବଜନ୍ତୁ ଦେଖିଲୁ । ସାନଝିଅ ପଚାରିଲା,ବାପା ! ଆମେତ ଅନେକ ଜୀବଜନ୍ତୁ ଦେଖିଲୁ । ହେଲେ ସେମାନଙ୍କ ବିଷୟରେ ଏତେଟା କିଛି ଭଲ ଭାବରେ ଜାଣି ହେଲାନି । ସେମାନେ କେଉଁଠି ରହନ୍ତି, କ'ଣ ଖାଆନ୍ତି, ତାଙ୍କର ଜୀବନ ବୃତ୍ତାନ୍ତ କ'ଣ ଇତ୍ୟାଦି ଇତ୍ୟାଦି । ଏହି ଜୀବଜନ୍ତୁଙ୍କୁ ଦେଖିବାକୁ ଆମେ ସୁଦୂର କୋରାପୁଟରୁ ଏତେ ପଇସା ଖର୍ଚ୍ଚ କରି କେତେ କଷ୍ଟ କରି ଆସିଲୁ । ଗରିବ ପିଲାମାନେ ପଇସା ଅଭାବରୁ ଏହିସବୁ ଦେଖିବାରୁ ବଂଚିତ ହେଉଥିବେ ନିଶ୍ଚୟ । ଆମ ଚାରି ପାଖରେ କେତେ ସୁନ୍ଦର ସୁନ୍ଦର ଜୀବଜନ୍ତୁମାନେ ଅଛନ୍ତି । ଅଥଚ ଆମେ ଦେଖିପାରୁନୁ କି ତାଙ୍କ ବିଷୟରେ ଏତେଟା ଜାଣି ବି ପାରୁନୁ ।

ସେଇଠି ସେହିକ୍ଷଣି ମୋ ମନରେ ଗୋଟିଏ ନୂଆ ଭାବନା ଜନ୍ମନେଲା । ପ୍ରକୃତରେ କ'ଣ ଗରିବ ପିଲାମାନେ ପଇସା ଖର୍ଚ୍ଚ କରି ଏହିସବୁ ଦେଖିବାକୁ ଆସିପାରିବେ? ତେବେ ସେମାନଙ୍କ ପାଇଁ କିଛି ଗୋଟିଏ ଏମିତି କାମ କରିବାକୁ ପଡିବ ଯାହାଦ୍ୱାରା ସେମାନେ ଘରେ ବସି ବିଭିନ୍ନ ଜୀବଜନ୍ତୁଙ୍କ ଉପରେ କିଛିଟା ଧାରଣା ପାଇପାରିବେ ଓ ଚିତ୍ର ମଧ ଦେଖି ଜୀବଟିକୁ ଚିହ୍ନି ପାରିବେ । ଏହା କେବଳ ପୁସ୍ତକ ଦ୍ୱାରା ହିଁ ସମ୍ଭବ ହୋଇପାରିବ । ତାହାପରେ ଭାବିଲି ଗଳ୍ପ ଆକାରରେ ଲେଖିବି ନା ଗୀତ ଆକାରରେ ଲେଖିବି । ଗପ ଅପେକ୍ଷା ଗୀତରେ ଲେଖିଲେ ଭଲ ହେବ ବୋଲି ଭାବିଲି । ପିଲାମାନେ ଚିତ୍ରଟି ଦେଖିବେ ଓ ତା ବିଷୟରେ ଗୀତଟିଏ ଗାଇଲେ ଭଲ ମନେ ରଖିବେ ।

ଅକ୍ଟୋବର ଦୁଇ ହଜାର ମସିହା, ସକାଳ ସମୟ । ଝିପି ଝିପି ବର୍ଷା ହେଉଥାଏ । ଗାଈଟିଏ ବର୍ଷାରେ ଓଦା ହୋଇ ଆମ ଘର ଆଗରେ ଥିବା ପଡ଼ିଆରେ ଘାସ ଚରୁଥାଏ । ମୋର ପ୍ରଥମ ଗୀତ ଆରମ୍ଭ କଲି ଆମର ଅତି ପ୍ରିୟ ମାଆ ସଦୃଶ୍ୟା ଗୋମାତା ଉପରେ । ଲେଖୁ ଲେଖୁ ୭୪ ଟି ଜୀବଜନ୍ତୁଙ୍କ ଉପରେ ୭୪ଟି ଗୀତ ଲେଖା ସରିଲା ଏପ୍ରିଲ ୧୪ ତାରିଖ ୨୦୦୧ ମସିହା ପଣା ସଂକ୍ରାନ୍ତି ଦିନ । ଲେଖା ସିନା ସରିଗଲା, ହେଲେ ଚିତ୍ର ନ ହେଲେ ମୋର ସବୁ ପରିଶ୍ରମ ବେକାର ହୋଇଯିବ ଭାବି ବଂଧୁ ଶ୍ରୀଯୁକ୍ତ ଉମେଶ ମେହେର (ଚିତ୍ର ଶିଳ୍ପୀ) ଙ୍କୁ ସବୁକଥା କହିବାରୁ ସେ ଗୀତ ଗୁଡ଼ିକ

ପଢ଼ି ଖୁସି ହୋଇ ଚିତ୍ର ଆଙ୍କିଲେ । ମୋର ପିଲାମାନଙ୍କର କହିବା ଅନୁସାରେ ବହିଟିର ନାମ ରଖିଲି ''ଚିଡ଼ିଆ ଖାନା'' । ଅନେକ ବଂଧୁ ପାଣ୍ଡୁଲିପିଟିକୁ ପଢ଼ିଲେ । ସମସ୍ତେ ପ୍ରଶଂସା କଲେ । ସୁଚିନ୍ତିତ ମତାମତ ଦେଲେ ଅଧାପକ ଓ ଶିଶୁ ସାହିତ୍ୟିକ ଡ଼ଃ ବସନ୍ତ କିଶୋର ସାହୁ , ସୁଶ୍ରୀ ସୁବର୍ଣ୍ଣ ମାଳା ବିଷୋୟୀ ଓ ସଂପାଦକ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ଭୁବନେଶ୍ୱରର କୈବଲ୍ୟ କଣ୍ଠ ଶ୍ରୀଯୁକ୍ତ ଅର୍ଜୁନ ଚରଣ ସାମଲ । ସେମାନଙ୍କ ନିକଟରେ ମୁଁ ଚିର କୃତଜ୍ଞ । ମୋର ପରିବାରର ସମସ୍ତ ସଦସ୍ୟମାନେ ତଥା ଅଧାପକ ନରେନ୍ଦ୍ର କୁମାର ମିଶ୍ର, ଅଧାପକ ଡ଼ଃ ଅଶୋକ କୁମାର ତ୍ରିପାଠୀ ତଥା ବଂଧୁ କୁମାର ପାଳ, କଣ୍ଠଶିଳ୍ପୀ ବେଣୁଧର ସୁବୁଦ୍ଧି ଉତ୍ସାହ ଓ ଧୈର୍ଯ୍ୟ ଦେଇଥିବାରୁ ମୁଁ ସେମାନଙ୍କ ନିକଟରେ ଚିରକୃତଜ୍ଞ । ଏହି ଅବସରରେ ଓଡିଶାର ଅନ୍ୟତମ ଲବ୍ଧପ୍ରତିଷ୍ଠିତ ପ୍ରକାଶକ ବଂଧୁ ଶ୍ରୀଯୁକ୍ତ ଶୁଭାନ୍ୱେଷ ରଥଙ୍କୁ ଧନ୍ୟବାଦ ସହ କୃତଜ୍ଞତା ନ ଜଣାଇ ରହିପାରୁନି, କାରଣ ମୋର ପାଣ୍ଡୁଲିପିଟି ପଢ଼ି ସେ ଅତ୍ୟନ୍ତ ଆନନ୍ଦିତ ହେବା ସଂଗେ ସଂଗେ 'ଶୌର୍ଯ୍ୟ ପ୍ରକାଶନ,କଟକ' ତରଫରୁ ପୁସ୍ତକଟିକୁ ପ୍ରକାଶ କରିବାକୁ ପ୍ରତିଶ୍ରୁତି ପ୍ରଦାନ କରି ଲେଖା ଲେଖିରେ ଆଗଭର ହୁଅନ୍ତୁ ବୋଲି ଯେଉଁ ଉତ୍ସାହ ପ୍ରଦାନ କରିଛନ୍ତି, ତାହା ମୁଁ କେବେ ଭୁଲି ପାରିବିନି ।

ଆଶାକରେ ଏହି 'ଚିଡ଼ିଆ ଖାନା' ପୁସ୍ତକଟି ଓଡ଼ିଶାର ପୁରପଲ୍ଲୀର ପିଲାମାନଙ୍କୁ ବିଭିନ୍ନ ଜୀବଜନ୍ତୁଙ୍କ ଉପରେ କିଛିଟା ଧାରଣା ନିଶ୍ଚୟ ଦେବ । ଯାହା ଦ୍ୱାରାକି ପିଲାମାନେ ଆମର ପରିବେଶ ସୁରକ୍ଷା ପାଇଁ ସଜାଗ ରହି ପାରିବେ ।

'ବନ୍ଦେ ଉତ୍କଳ ଜନନୀ'

**ଲେଖକ**

# ଆମେ ସବୁ
# ଏହି ବହିରେ ଅଛୁ

# ଆମେ ସବୁ
# ଏହି ବହିରେ ଅଛୁ

## ଚିଡ଼ିଆ ଖାନା

ଆସ ମୋ ଭାଇ ଭଉଣୀମାନେ
ଚିଡ଼ିଆଖାନା ଦେଖ,
ଖୁସିରେ ଦେଖି ଦେଖିକା ଯିବ
ଲାଗିବ ନାହିଁ ଭୋକ ॥୦॥

ପଶୁରେ ଗାଈ, ହରିଣ, ହାତୀ
ମାଙ୍କଡ, ଭାଲୁ, ଛେଳି,
ବିଲୁଆ, ବାଘ, ସିଂହ, କୁକୁର
ଠେକୁଆ ଭଳି ଭଳି ।

ବିଲେଇ ନାନୀ, ନେଉଳ ଭାଇ
ଦୂରରୁ ତାଙ୍କୁ ଡ଼ାକ
ଚିଡ଼ିଆଖାନା ଦେଖ ॥୧॥

ପକ୍ଷୀରେ ହଂସ, ମୟୂର, ବଗ
କପୋତ, ବଣି, ପାରା
ବାଇ ଚଢ଼େଇ, କୋଚିଲାଖାଇ
କୋଇଲି, କୁକାବୁରା ।

ଗରୁଡ଼ ପକ୍ଷୀ ଚାହିଁ ରହିଛି
ନଯାଅ ତାର ପାଖ
ଚିଡ଼ିଆଖାନା ଦେଖ ॥୨॥



## ଗାଈ

ଘର ଭଲ ମନ୍ଦ ସୁଖ ଦୁଃଖ ବେଳେ
ପାଶେ ଥିବ ଜଣେ ଭାଇ,
କ୍ଷୀର ଖାଇବାକୁ ଯଦି ଇଚ୍ଛା ତେବେ
ଘରେ ପାଳିଥିବ ଗାଈ ।।୦।

ଘାସ, କୁଟା, ପେଜ,ଦାନାକୁ ଯେପରି
ଗାଈକୁ ଯୋଗାଇଥିବ,
ସଂଜ ସକାଳରେ ନିଇତି ତାଠାରୁ
ସେପରି କ୍ଷୀର ମିଳିବ ।
ଗାଈଟି ଆମର ମା'ପରି ସତେ
ଗୋମାତା ତାହାକୁ କହି
ଘରେ ପାଳିଥିବ ଗାଈ ।୧।

କ୍ଷୀର କାଟି ଛେନା,ଛେନାପୋଡପିଠା
ରସଗୋଲା,ଛେନାଗଜା,
ସବୁଠାରୁ ମିଠା ରସମଳେଇଟି
ଖାଇବାକୁ ବଡ଼ ମଜା ,
ଆହୁରି ବଢ଼ିଆ ପିଇଦେଲେ ପେଟେ
ଖଣ୍ଡ ଖଣ୍ଡ ବସା ଦହି
ଘରେ ପାଳିଥିବ ଗାଈ ।୨।



## ବାଘ

ଘନ ଜଙ୍ଗଲ ପଥର ଖୋଲ
ବାଘର ଅଟେ ଘର
ଅଜାର ମାମୁଁ ନାତିର ମାମୁଁ
ମାମୁଁ ସେ ସଭିଙ୍କର ।୦।

ଜଙ୍ଗଲସାରା ଘୁରି ବୁଲେ ସେ
ଶୀକାରଟିଏ ପାଇଁ
ଝରଣାକୂଳେ ଜଗି ବସଇ
ବୁଦା ଭିତରେ ରହି ।
ଧରେ ହରିଣ,ଶମ୍ବର,ଶଶା
ଯେ ପଡ଼େ ଆଗେ ତାର
ଅଜାର ମାମୁଁ ନାତିର ମାମୁଁ
ମାମୁଁ ସେ ସଭିଙ୍କର ।।୧।

ବାଘର ନଖ, ବାଘ ଚମଡା
ଆଉ ତା ନିଶ, ହାଡ
ଅମୂଲ ମୂଲ ଅଟଇ ସିଏ
ସବୁରି ପାଇଁ ବଡ଼ ।
ସେ ପୁଣି ଅଟେ ଜାତୀୟ ପଶୁ
ଆମ ଏ ଭାରତର
ଅଜାର ମାମୁଁ ,ନାତିର ମାମୁଁ,ମାମୁଁ ସେ ସଭିଙ୍କର ।।୨।



## ସିଂହ

ଘଞ୍ଚ ଜଂଗଲ ଭିତରେ ରହେ
ସିଂହ ସେ ପଶୁ ରାଜା,
ସାରା ବଣଟା ରାଇଜ ତା'ର
କରେ ସେ କେତେ ମଜା ।।୦।

ପଥର ଖୋଲ ତା ରାଜବାଟୀ
ପାହାଡ ସିଂହାସନ,
ବୁଲି ବୁଲିକା ବଣ ରାଇଜେ
ଚଳାଏ ତା ଶାସନ,
ଡ଼ରନ୍ତି ତାକୁ ସକଳ ପଶୁ
ଦେଖି ତା ରୂପସଜା
ସିଂହ ସେ ପଶୁରାଜା । ।୧।

ଛାତିଟି ମୋଟ ଅଣ୍ଟାଟି ସରୁ
ଭାରି ବଳୁଆ ସିଏ,
ଭୋକ ହୋଇଲେ ଶୀକାର କରି
ଖୁସି ମନରେ ଖାଏ,
ପିଠିରେ ତାର ଜଗତ ମାତା
ବସନ୍ତି ଦଶଭୂଜା
ସିଂହ ସେ ପଶୁରାଜା ।।୨।



## ହାତୀ

ଶାଳୁଆ କାଠର ଖୁଣ୍ଟ ପରି ସତେ
ଚାରୋଟି ଗୋଡ ତାହାର
କୁଲାପରି କାନ ବିଶାଳ ଶରୀର
ହାତୀ ନାମ ସେ ଜୀବର ,
ଦେଖିଲେ ମାଡଇ ଡର ।।୦।

ଶୁଣ୍ଡଟି ତାହାର ଅଟଇ ତା ନାକ
ଝୁଲୁଥାଏ ପାଦଯାଏଁ
ରୂପଟି ତାହାର ଚିକ୍କଣ କାଳିଆ
ସତେକି ପାହାଡଟିଏ ।
ଝୁଲି ଝୁଲି ଯେବେ ଚାଲୁଥାଏ ସିଏ
ଦିଶଇ ବଡ଼ ସୁନ୍ଦର
ତୁଳନା ନାହିଁ ତାହାର ।।୧।

କଦଳୀ ଗଛର ମଞ୍ଜା ପରି ଦିଶେ
ଦୁଇଆଗ ଦାନ୍ତ ତାର
ମିଞ୍ଜିମିଞ୍ଜି ଦିଶୁଥାଇ ଆଖି ଦୁଇ
ସତେ ତାରା ଆକାଶର ।
ହାତୀର ଚମଡା ,ହାତୀ ଦାନ୍ତ,ହାଡ
ସାରା ଜଗତେ ଆଦର
ଅମୂଲ ମୂଲ ତାହାର ।।୨।



## ସିମ୍ପାଞ୍ଜି

ମଣିଷ ନୁହେଁ ସେ ମଣିଷ ପରି
ସିମ୍ପାଞ୍ଜି ଅଟଇ ନାମ ତାହାରି ......
ଘଞ୍ଚ ଜଂଗଲରେ ରୁହଇ ସେହି
ସୂରୁଜ କିରଣ ପଡ଼େନି ଯହିଁ ।
କଅଁଳିଆ ପତ୍ର, ଫୁଲ, ଫଳ ଖାଏ
ଖାଏନି ପଶୁକି ପକ୍ଷୀଙ୍କୁ ମାରି
ସିମ୍ପାଞ୍ଜି ଅଟଇ ନାମ ତାହାରି ।୧।

ଯାଯାବର ପରି ତା ଦିନ ଯାଏ
ଗୋଟିଏ ଯାଗା ତା ପସନ୍ଦ ନୁହେଁ
ଏଠି ଚାରିଦିନ ସେଠି ଛଅ ଦିନ
ଘୁରି ବୁଲୁଥାଏ ବିଚାର କରି
ସିମ୍ପାଞ୍ଜି ଅଟଇ ନାମ ତାହାରି ।୨।

ଭାରି ବଳୁଆ ସେ ଅଟଇ ଶାନ୍ତ
ହସେ ଆମ ପରି ଦେଖାଇ ଦାନ୍ତ
ସବୁ ପଶୁଠାରୁ ଭାରି ବୁଦ୍ଧିଆ ସେ ।
ଆମ ପାଇଁ ଅଟେ ସେ ଉପକାରୀ ।
ସିମ୍ପାଞ୍ଜି ଅଟଇ ନାମ ତାହାରି ।୩।



## ହରିଣ

ଭାରି ସୁନ୍ଦରିଆ ନିରୀହ ପଶୁଟି
ଘାସ ପତର ଆହାରୀ,
ଡ଼ିଆଁ ଦଉଡ଼ରେ ଭାରି ଧୁରନ୍ଧର
ହରିଣ ନାମ ତାହାରି ।୦।

ଛୋଟ ବଡ଼ ହୋଇ ଅନେକ ଆକାରେ
ଅନେକ ତାହାର ଜାତି ,
ସୂରୁଯ ବୁଡ଼ିଲେ ଦଳ ଦଳ ହୋଇ
ଚରି ବୁଲି ବାହାରନ୍ତି ।
ବଳିଆ କୁକୁର, ସିଂହ, ବାଘକୁ ସେ
ରହିଥାଏ ସଦା ଡ଼ରି
ହରିଣ ନାମ ତାହାରି । ॥୧॥

ଦେଖିବା ଶକତି, ଶୁଣିବା ଶକତି
ଅଧିକ ଅଟେ ତାହାର ,
ବିପଦ ଆସିଲେ ଗନ୍ଧରୁ ସେ ଜାଣେ
ହୋଇଯାଏ ହୁସିଆର ।
ଭାରି ସେ ଡରକା, ଭାରି ଡ଼ରକୁଳା
ଯାଏ ନି ତା ଦଳ ଛାଡ଼ି
ହରିଣ ନାମ ତାହାରି । ॥୨॥



## କଙ୍ଗାରୁ

ଦେହଟି ତା ଲମ୍ବା ଲାଞ୍ଜଟି ବି ଲମ୍ବା
ଲମ୍ବା ପଛ ଗୋଡ଼ ଦୁଇ ,
ପେଟ ତଳେ ତାର ଚମଡ଼ା ମୁଣାଟି
କଙ୍ଗାରୁ ଅଟଇ ସେହି ॥୦॥

ଖାଅଇ ସେ ଘାସ ନିରାମିଶାଷୀ ସେ
ଡ଼େଇଁ ଡ଼େଇଁ ଦଉଡ଼ଇ ,
ଗୋଟିଏ କୁଦାରେ ଦଶ ହାତ ଡ଼ିଏଁ
ବିପଦ ଯଦି ଆସଇ ।
ଏକୁଟିଆ କେବେ ରହେନାହିଁ ସିଏ
ରହେ ସଦା ମେଳ ହୋଇ
କଙ୍ଗାରୁ ଅଟଇ ସେହି । ॥୧॥

ଛୁଆ କଙ୍ଗାରୁଟି ମାଆ ପେଟ ତଳେ
ମୁଣାରେ ସୁଖରେ ଥାଇ,
ମୁହଁଟିକୁ କାଢ଼ି ଢଳ ଢଳ କରି
ଖୁସିରେ ସବୁ ଦେଖଇ ।
କଙ୍ଗାରୁର ଦେଶ ଅଷ୍ଟ୍ରେଲିଆର ସେ
ଜାତୀୟ ପଶୁ ଅଟଇ
କଙ୍ଗାରୁ ଅଟଇ ସେହି । ॥୨॥



## ଜୀରାଫ

ଯେତେ ପଶୁ ଏହି ଜଗତେ ଅଛନ୍ତି
ସବୁଠାରୁ ଉଚ୍ଚା ଯିଏ ,
ଲମ୍ବା ଲମ୍ବା ଗୋଡ଼ ବହୁ ଲମ୍ବା ବେକ
ଜୀରାଫ ଅଟଇ ସିଏ ।     ।୦।

ଦେହ ସାରା ତାର କୋଠି କୋଠି ଚିହ୍ନ
ଦିଶଇ ଭାରି ସୁନ୍ଦର ,
ଏତେ ବଡ଼ ପଶୁ, ଘୋଡ଼ାପରି ମୁହଁ
ନାହିଁଟି ଶିଙ୍ଗ ତାହାର ।
ଉଚ୍ଚା ଗଛରୁ ସେ ଖାଅଇ ପତର
ଘାସକୁ ବି ଭଲ ପାଏ
ଜୀରାଫ ଅଟଇ ସିଏ ।     ।୧।

ପଛ ଦୁଇ ଗୋଡ଼େ ମାରଇ ସେ ନାତ
ଆପଣା ସୁରକ୍ଷା ପାଇଁ
ଅନେକ ବେଗରେ ଦଉଡ଼ି ପାରଇ
ବାଘ ପାରେନାହିଁ ଛୁଇଁ ।
ବଣ ଜଙ୍ଗଲରେ ଆଫ୍ରିକା ଦେଶରେ
ଅଧିକ ସେ ଦେଖାଯାଏ
ଜୀରାଫ ଅଟଇ ସିଏ ।     ।୨।



## ଜଳହସ୍ତୀ

ହାତୀ ପରି ସତେ ଦେଖିବାକୁ ସିଏ
ହେଲେ ତାର ଶୁଣ୍ଡ ନାହିଁ ।
ଛୋଟ ଛୋଟ ଗୋଡ଼ ଛୋଟ ତାର କାନ
ଜଳ ହସ୍ତୀ ତାକୁ କହି ।୦।

ଦିନ ନାହିଁ ଅବା ରାତି ନାହିଁ ସଦା
ପାଣି ଭିତରେ ସେ ଥାଏ ,
ପୁରା ଶାକାହାରୀ ପାଣି ଘାସ, ଦଳ
ଯାହା ମନ ଇଚ୍ଛା ଖାଏ ।
ବିରାଟ ତା ପାଟି ଡ଼ର ଲାଗେ ଦେଖି
ଖୋଲି ଦିଏ ଯେବେ ସେହି ।
ଜଳହସ୍ତୀ ତାକୁ କହି ।୧।

ଭାରି ସୁନ୍ଦର ସେ ପହଁରି ପାରଇ
ବିଶାଳ ଦେହକୁ ନେଇ ,
ହେଲେ ତାର ନାକ, କାନ, ଆଖି ଦୁଇ
ପାଣିରେ ବୁଡ଼ାଏ ନାହିଁ ।
ଧୂସର କାଳିଆ ଚିକ୍କଣ ତା ଦେହ
ଚମଡ଼ା ମୋଟା ଅଟଇ ,
ଜଳହସ୍ତୀ ତାକୁ କହି । ।୨।



## ଗଣ୍ଡା

ଏମିତି ପଶୁଟିଏ
ଘନ ଜଂଗଲେ ଥାଏ
ନାକ ଉପରେ ଶିଂଗ ତାହାର
ଗଣ୍ଡା ଅଟଇ ସିଏ ।।୦।।

ବିଶାଳ ଅଟେ ଶରୀର ତାର
ଚିକ୍କଣ ମୋଟା ଚମ
ଧୂସର କଳା ରଂଗ ତାହାର
ନଥାଏ କିଛି ଲୋମ
ଶିଂଗ ତାହାର ଅମୂଲ ମୂଲ
ବଜାରେ ଯଦି ଯାଏ
ଗଣ୍ଡା ଅଟଇ ସିଏ ।।୧।।

ପୋଦନା ପରି ଲତା ଜାତୀୟ
କାଣ୍ଡ ପତର ଖାଏ
ଘାସ ବୁଦାକୁ ଖାଇବାକୁ ସେ
ଆହୁରି ଭଲ ପାଏ
ପରିଶ୍ରା ତାର ଶ୍ୱାସ ରୋଗୀକୁ
ନୂଆ ଜୀବନ ଦିଏ
ଗଣ୍ଡା ଅଟଇ ସିଏ ।।୨।।



## ଭାଲୁ

ରୂପଟି ତାର ଚିକ୍କଣ କଳା
ଦେହଟି ସାରା ରୁମ
ଝୁଲି ଝୁଲିକା ଚାଲଇ ସିଏ
ଭାଲୁ ଅଟେ ତା ନାମ ॥୦॥

ପଥର ଖୋଲ ଭିତରେ, କେବେ
ବଣ ବୁଦାରେ ରହେ
ଦିନରେ ତାକୁ ହୁଅନ୍ତି ଡର
ଘୁମେଇ ପଡ଼ିଥାଏ ।
ସଂଜ ହୋଇଲେ ଆହାର ଖୋଜେ
ନିତି ଦିନ ତା କାମ
ଭାଲୁ ଅଟେ ତା ନାମ ॥୧॥

ଧଇ ହୁଙ୍କାକୁ ଦିଅଇ ତାଡ଼ି
ମୁନିଆଁ ନଖେ ତାର ।
ଖୁସିରେ ବସି ଖାଅଇ ଉଇ
ନ ହୋଇ ତରବର ।
ପଣସ ଧରି ଗଛରୁ ଡ଼ିଏଁ,
ମହୁ ଫେଣାକୁ ଯମ
ଭାଲୁ ଅଟେ ତା ନାମ ॥୨॥



## ବଳଦ

ଗାଈର ପୁଅ ବଳଦ ସିଏ
କରଇ ଆମ ହଳ,
ସୁନା ଫସଲ ଫଳାଏ କ୍ଷେତେ
ଦେଇ ଆପଣା ବଳ ॥୦॥

ନଡ଼ାର ଭୁଷି, ବିରିର ବୋତି
ସକାଳୁ ସିଏ ଖାଏ,
ପେଜ, ତୋରାଣି, କାଣ୍ଡିଆ କୁଣ୍ଡା
କୋଳଥ ବଟା ପିଏ ।
ପାଇଲେ ଘାସ ଅତି ହରଷ
ଗଡ଼େ ତା ଛିଡ଼ୁ ଲାଳ
ସୁନା ଫସଲ ଫଳାଏ କ୍ଷେତେ
ଦେଇ ଆପଣା ବଳ ॥ ୧॥

ଖରା, ବରଷା, ଶୀତକୁ ତାର
ତିଳେ ଖାତିରି ନାହିଁ,
କାନ୍ଧରେ ତାର ଥିଲେ ଜୁଆଳି
ବେଳ ସେ ବୁଝେ ନାହିଁ ।
ଯାହାବା ସୁଖ ପାଉଛୁ ଆମେ
ସବୁର ସିଏ ମୂଳ
ସୁନା ଫସଲ ଫଳାଏ କ୍ଷେତେ
ଦେଇ ଆପଣା ବଳ । ॥୨॥



## ଘୋଡ଼ା

ଯେତେ ପଶୁ ଆମେ ଘରେ ପାଳି ଥାଉ
ସବୁଠୁଁ ବଳୁଆ ଯିଏ,
ତା ନାମଟି ଘୋଡ଼ା ଭାରି ସୁନ୍ଦରିଆ
ସାହାସର ଚିହ୍ନ ସିଏ ......।୦।

ଧଳା, କଳା, ନାଲି, ଛବିଲା ଅଟଇ
ଅନେକ ତାହାର ରଂଗ,
ଏତେ ବଳଶାଳୀ ପଶୁଟିଏ ହୋଇ
ନାହିଁ ତା ମୁଣ୍ଡରେ ଶିଙ୍ଗ
ଖାଏ ଘାସ, ପତ୍ର, ଦାନା ଓ କୋଳଥ
ଠିଆ ଠିଆ ସିଏ ଶୁଏ
ସାହାସର ଚିହ୍ନ ସିଏ .....।୧।

ଢଳିଲା, ବଳିଲା ଦେହଟି ତାହାର
ପିଠିଟି ଟିକେ ଢ଼ାଲୁଆ,
ତା ପିଠିରେ ବସି ଯେତେ ଦୂର ଗଲେ
ଲାଗଇ ନାହିଁ ହାଲିଆ ।
ଭାରି ବୋଲକରା ଭାରି ସେ ଚତୁର
ଆମ ଉପକାରେ ଥାଏ ସାହାସର ଚିହ୍ନ ସିଏ ...।୨।



## ମେଣ୍ଢା

ଛେଳି ପରି ପଶୁ ତାକୁ ଆମେ ପୋଷୁ
ଆମ ଉପକାର ପାଇଁ,
ତା ନାମଟି ମେଣ୍ଢା ତା ଲାଗି ଆମର
ଏତେ ସେବା ଲୋଡ଼ା ନାହିଁ .....।୦।

ପଡ଼ିଆ ଦଣ୍ଡାରେ ଖୋଲି ଦେଲେ ତାକୁ
ପେଟ ଭରି ଖାଏ ଘାସ,
ପେଢ ତୋରାଣୀରୁ ଯାହା ଯେବେ ମିଳେ
ପିଅଇ ହୋଇ ହରଷ,
ନଡ଼ା, ପାଳ, କୁଣ୍ଡା ଖାଇବାରେ ତାର
କେବେ ହେଳା କରେ ନାହିଁ
ଆମ ଉପକାର ପାଇଁ ..... ।୧।

ମେଣ୍ଢାର ଲୋମରେ ଗରମ ପୋଷାକ
ତିଆରି କରି ଯତନେ,
ଆସିଗଲେ ଶୀତ ପିନ୍ଧୁ ଆମେ ସବୁ
କେତେ ଖୁସି ହୋଇ ମନେ,
ମେଣ୍ଢା ଲଢ଼େଇଟି ଭାରି ମଜା ଲାଗେ
ସଭିଙ୍କୁ ଦେଖିବା ପାଇଁ
ଆମ ଉପକାର ପାଇଁ ..... ।୨।



# ଛେଳି

ଛେଳିରେ ଛେଳି ଛଇ ଛବେଲି
କାଳିଆ, ଧଳା, ନାଲି,
ଛେଳିର ଡ଼ାକ ଶୁଣି ବିଲୁଆ
ବସଇ କାନ ଖୋଲି
ତାକୁ ଖାଇବ ବୋଲି ....।୦।

ଛେଳି ଛୁଆଟି କଉତୁକିଆ
ସୁନ୍ଦର ଦିଶେ ଭାରି,
ଖଣ୍ଡିଆ କାନ୍ଥ ତା ପାଇଁ ଭଲ
ଖେଳଇ ମନ ଭରି,
କୁନା ମୁନାଙ୍କ ଖେଳନା ସିଏ
ଯାଆନ୍ତି ଧରି ବୁଲି
ପାଠ ପଢ଼ିବା ଭୁଲି ... ।୧।

ଛେଳିର ପାଇଁ ବରଷା ବଡ଼ି
ଅଟଇ ଅସୁବିଧା,
ଖାଇବା ପାଇଁ ମିଳେନି ଏତେ
ପେଟ ତା ରହେ ଅଧା ।
ଛେଳି ଅଟଇ ପୋଷଣାହାରୀ
ଗରିବ ଭାତ ଥାଳୀ
ତା ପାଇଁ ଜଳେ ଚୂଲି ... ।୨।

## ହନୁ ମାଙ୍କଡ଼



କାଳିଆ ମୁହଁ ଚେପଟା ନାକ
ଲାଞ୍ଜଟି ଲମ୍ବା ତାର ,
ନାଆଁଟି ଅଟେ ହନୁ ମାଙ୍କଡ଼
ଗଛ ଡାଳ ତା ଘର ...।୦।

ଦେହଟି ସାରା ଲୁମରେ ଭରା
ଦାନ୍ତ ତା ସତେ ହୀରା ,
ଡାଳରୁ ଡାଳ ଡେ଼ଉଁ ଥାଏ ସେ
ନ ଦିଏ କେବେ ଧରା ।
ଭାରି ସୁନ୍ଦର ଖେଳଇ ସିଏ
ଛୁଆ ସାଥିରେ ତା'ର ।
ନାଆଁଟି ଅଟେ ହନୁ ମାଙ୍କଡ଼
ଗଛ ଡ଼ାଳ ତା ଘର ....।୧।

କେତେ କାହାର ବାଡ଼ି ବଗିଚା
ବୁଲଇ ସିଏ ନିତି ।
ଭଳିକି ଭଳି ପନି ପରିବା
ଖାଅଇ ହୋଇ ସାଥି ।
ଯାହା ବା କରୁ ସେ ରାମ ଭକ୍ତ
ତାକୁ ଜୁହାର ମୋର
ନାଆଁଟି ଅଟେ ହନୁ ମାଙ୍କଡ଼
ଗଛ ଡାଳ ତା' ଘର ...।୨।



# ଗଧ

ଦେଖିବାକୁ ସିଏ ଘୋଡ଼ା ପରି
ଘୋଡ଼ା ସଂଗେ ନୁହେଁ ସିଏ ସରି
ବୋଝ ବୋହି ବୋହି ଦିନ ସରେ ତାର
ଗଧ ସିଏ ବୋକା ଅଟେ ଭାରି ...।୦।

ଘାସ, ନଡ଼ା, କୁଟା ଯାହା ପାଏ
କିଛି ଭାବେ ନାହିଁ ପେଟେ ଖାଏ ।
ମାଲିକ ଇଚ୍ଛାରେ ତା ପାଦ ଚଳଇ
କେହି ନାହିଁ ତାର ଦୁଃଖ ହାରୀ
ଗଧ ସିଏ ବୋକା ଅଟେ ଭାରି ...।୧।

କଣ୍ଠ ତାର ଫଟା ଢୋଲ ପରି
ସତେ ଆଷାଢ଼ର ଘଡ଼ ଘଡ଼ି ।
ପଛୁଆ ନାତ ତା ଭୀମ ଗଦା ମାଡ଼
ଦେବ ସେ ହାଡ଼କୁ ଚୂନା କରି
ଗଧ ସିଏ ବୋକା ଅଟେ ଭାରି ...।୨।

ଠିଆ ଠିଆ ତାର କାନ ଦୁଇ
ସତେ ସେ ଠେକୁଆ ବଡ଼ ଭାଇ
ଠିଆ ହୋଇଥିଲେ ସତେ ଚିତ୍ରଟିଏ
ନାହିଁ ତା ଜୀବନ ଶବ ପରି
ଗଧ ସିଏ ବୋକା ଅଟେ ଭାରି ...।୩।

# ଘୁଷୁରୀ



କାଳିଆ ଧୂସର ରୂପଟି ତାର
ଚେପଟା ମୁହଁକୁ ଥୋମଣି ବଡ଼
ଥୋମଣି ଆଗରେ ନାକଟି ତାହାର
ଘୁଷୁରୀ ନାମରେ ପ୍ରିୟ ଆମର ...।୦।

ଚେହେରାକୁ ତାର ପେଟଟି ବଡ଼
ଲମ୍ବାଳିଆ ପାଟି, ଚାରୋଟି ଗୋଡ଼
ଛୋଟିଆ ଲାଞ୍ଜରେ ମୁଠାଏ ତା କେଶ
ନୁହେଁ ଅସୁନ୍ଦର ନୁହେଁ ସୁନ୍ଦର
ଘୁଷୁରୀ ନାମେ ସେ ପ୍ରିୟ ଆମର ...।୧।

ଘାସୁଆ ଜମିରେ ଘୁଷୁରୀ ପଲ
ଘଡ଼ିଏ ରହିଲେ ଚାଷୀକୁ ଭଲ ,
ଘାସକୁ ଉପାଡ଼ି ମୂଳକୁ ଖାଆନ୍ତି
ବଢ଼ିଆ ଫସଲ ହୁଏ ଅମଳ
ଘୁଷୁରୀ ନାମେ ସେ ପ୍ରିୟ ଆମର ...।୨।

ବରଷା ବଢ଼ିକୁ ନାହିଁ ତା ଡ଼ର
ନଈକୁ ପହଁରି ହୁଏ ସେ ପାର
ଅଖାଦ୍ୟ କୁ ସିଏ ଖାଅଇ ଖୁସିରେ
ସଫା ରଖେ ପରିବେଶ ଆମର
ଘୁଷୁରୀ ନାମେ ସେ ପ୍ରିୟ ଆମର ...।୩।



# ବିଲୁଆ ନନା

ସଂଜ ଆସିଗଲେ ଅନ୍ଧାର ହୋଇଲେ
ବାହାରେ ବିଲୁଆ ନନା,
ହୁକେ ହୋ ହୁକେ ହୋ ଭୁକଇ ସେ ନିତି
ଡ଼ରିଯାନ୍ତି କୁନା ମୁନା ...।୦।

ଗହୀର ବିଲରେ, ବନ୍ଧ, ହୁଡ଼ା ତଳେ
ବିଲୁଆ ନନାର ଘର ।
ଅତି ଯତନରେ ଗାତ କରି ସିଏ
ରଖେ ପରିବାର ତାର ।
ଖାଅଇ ସେ ମାଛ, କଙ୍କଡ଼ା, କଇଁଚ
ମାଉଁସ ତା ପାଇଁ ଛେନା
ହୁକେ ହୋ, ହୁକେ ହୋ ଭୁକଇ ସେ ନିତି
ଡ଼ରି ଯାନ୍ତି କୁନା ମୁନା ... ।୧।

ଶୀତ, ଗ୍ରୀଷମକୁ ନାହିଁ ତାର ଡ଼ର
ଡ଼ରତା ବରଷା ବଢ଼ି ।
ପିଲା ଛୁଆ ତା'ର ବଡ଼ ହଇରାଣ
ତା' ଘରେ ପଶିଲେ ପାଣି ।
କୁକୁର ଡ଼ରରେ ଗାଆଁ ଭିତରକୁ
କେବେ ସେ ଆସି ପାରେନା
ହୁକେ ହୋ ହୁକେ ହୋ ଭୁକଇ ସେ ନିତି
ଡ଼ରି ଯାନ୍ତି କୁନା ମୁନା ...।୨।



## ଆମ କୁକୁର

ଆମ ଘରେ ଅଛି କୁକୁର ଗୋଟିଏ
ନାଆଁଟି ତାହାର ଋକି
ଯେଉଁଠି ଥିଲେବି ଦଉଡ଼ି ଆସଇ
ଥରେ ଦେଲେ ତାକୁ ଡ଼ାକି ॥୦॥

ଡ଼ଉଲ ଡ଼ାଉଲ ଚେହେରା ତାହାର
ଖାଅଇ ସେ ଦୁଧ ଭାତ,
ମୋ କୋଳେ ବସଇ ମୋ ପାଖେ ଶୁଅଇ
ସେ ଅଟେ ମୋହର ମିତ ।
ଅଚିହ୍ନା ଲୋକକୁ ଡ଼ରାଇ ଦିଏ ସେ
ଭାଉ ଭାଉ ଭୁକି ଭୁକି
ନାଆଁଟି ତାହାର ଋକି ...।୧।

ପ୍ରଭୁ ଭକ୍ତ ସିଏ ସରଳ ବିଶ୍ୱାସୀ
ଚଳେ ଆମ ବୋଲ ମାନି ।
ଯେତିକି ଦେଲେ ବି ଖୁସିରେ ଖାଅଇ
ହୁଏ ନାହିଁ ଅଭିମାନୀ
ଚୋର ପାଇଁ ସିଏ ପୋଲିସି ଠୁଁ ବଳି
ଗୋଡ଼ାଇ ଧରେ ତା ଶଙ୍କି
ନାଆଁଟି ତାହାର ଋକି ...।୨।



# ବିଲେଇ ନାନୀ

ବୋଉଲୋ ବୋଉ ଦେ' ତୁ ଖଣ୍ଡେ
ମାଛ ଭଜାରୁ ମତେ,
ବିଲେଇ ନାନୀ କାନ୍ଦୁଛି ବସି
ଗଡ଼ାଇ ଲୁହ କେତେ ...।୦।

ସକାଳୁ ସଂଜ ରାତି ତମାମ
ବୁଲଇ ଘର ଘର ।
ଭୋକ ହୋଇଲେ ଲୁଚି ଛପି ସେ
ଖାଅଇ କ୍ଷୀର ସର
ଦୁଧ ଭାତ ମୁଁ ଦେବି ତାହାକୁ
ରହିବ ଆମ ସାଥେ
ବୋଉଲୋ ବୋଉ ଦେ' ତୁ ଖଣ୍ଡେ
ମାଛ ଭଜାରୁ ମତେ ...।୧।

ରାତି ହୋଇଲେ ମୂଷା ମାନଙ୍କ
ସହି ହେଉନି ଦାଉ
ବହି କାଗଜ କେତେ ଦରବ
କାଟି ଦେଖାନ୍ତି ଭାଉ ।
ବିଲେଇ ନାନୀ ମାରିବ ମୂଷା
ଖାଉ ସେ ମାଛ ଯେତେ
ବୋଉଲୋ ବୋଉ ଦେ' ତୁ ଖଣ୍ଡେ
ମାଛ ଭଜାରୁ ମତେ ...।୨।



# ଠେକୁଆ

ଛକ ପକ ହୋଇ ଠେକୁଆ ଭାଇ
ଆଗକୁ ଚାହିଁ ସେ ପଛକୁ ଚାହିଁ
ଟିକିଏ ରହି, ଯାଉଛି ଧାଇଁ ...।୦।

ଢ଼ଉଲ ଢ଼ାଉଲ ଚେହେରା ତାର,
ମାଉଁସ ପିଣ୍ଡୁଳା ଭାରି ସୁନ୍ଦର।
ଧୂସର ରଂଗକୁ ଚିକ୍କଣ ଦେହ,
ବଡ଼ ଶବଦରେ ଯାଅଇ ମୋହ।
ବୋକାଟିଏ ସିଏ ଭାରି ନିରୀହ
ତା କଥା କେହି, ଭାବଇ ନାହିଁ ...।୧।

ଘର ବୋଲି ତାର କିଛି ତ ନାହିଁ
ବୁଦାଟିଏ ଦେଖି ଯାଅଇ ରହି
ଖାଅଇ କଅଁଳ ଘାସ ପତର
ଦୁବ ଘାସକୁ ତା ବେଶି ଆଦର।
ତା ପାଇଁ ଜଂଗଲ ଦିଶେ ସୁନ୍ଦର
ଯେବେ ଯାଅଇ, ସେ ଡ଼େଇଁ ଡ଼େଇଁ ...।୨।

## ଓଟ



ପାଣି ଜାହାଜ ଭାସି ଭାସିକା
ପାଣିରେ ସିନା ଯାଏ
ଭୁଉଁ ଭୁଉଁ ଭୁଉଁ ଉଡ଼ାଜାହାଜ
ଆକାଶେ ଉଡୁଥାଏ
ମରୁଭୂମିର ଜାହାଜ ଟିକୁ
ଦେଖିଛ କୁହ କିଏ
ଓଟ ଅଟଇ ସିଏ ।୦।

ଲମ୍ବା ଲମ୍ବା ତା ଗୋଡ଼ ଚାରୋଟି
ପାଦ ତା ଓସାରିଆ
ବାଲିରେ ତାକୁ ଦଉଡ଼ିବାକୁ
ଲାଗଇ ସହଜିଆ
ଭାରି ମୋଟା ତା ଦେହର ଚମ
ଶୀତ ଖରାକୁ ସହେ
ଓଟ ଅଟଇ ସିଏ ।୧।

ଲମ୍ବା ଅଟଇ ବେକଟି ସିନା
ଛୋଟିଆ ତାର ଲାଞ୍ଜ
ପିଠିରେ ଥାଏ ପାଣି ଥଳିଟି
ସେଇଟି ତାର କୁଜ ।
ଅନେକ ଦିନ ଖରାରେ ସିଏ
ପାଣି ନ ପିଇ ରହେ
ଓଟ ଅଟଇ ସିଏ । ।୨।

## ଗୋଧି



ଜୀବଟିଏ ସିଏ ଦେଖିବାକୁ ଲାଗେ
ସତେକି କୁମ୍ଭୀର ଛୁଆ,
ଚାଲିବି ଯେପରି ରୂପଟି ସେପରି
ଗୋଧି ଅଟେ ତାର ନାଆଁ ...।୦।

ଗଛର କୋରଡ଼, ବଣ, ବୁଦା, ମାଳ
ଯେଉଁଠି ଇଚ୍ଛା ସେ ରହେ।
ନାନା ପୋକ-ଜୋକ, ପାଇଲେ ସେ ମାଛ
ଖୁସି ମନେ ବସି ଖାଏ।
ଦେହଟି ତାହାର ମାଟିଆ ଧୂସର
ଲାଞ୍ଜ ତାର ଲମ୍ବାଳିଆ
ଗୋଧି ଅଟେ ତାର ନାଆଁ ...।୧।

ନାଗ ସାପ ପରି ଗରଜନ ତା'ର
ଶୁଣିଲେ ଲାଗଇ ଡ଼ର
ମଣିଷର ସିଏ ଭାରି ଉପକାରୀ
କରେ ନାହିଁ ହରବର।
ଚମଡ଼ା ରେ ତା'ର ହୁଅଇ ଖଞ୍ଜଣୀ
ବାଜେ ସେ କେଡ଼େ ବଢ଼ିଆ
ଗୋଧି ଅଟେ ତା'ର ନାଆଁ ....।୨।



# ଝିଙ୍କ

ମୂଷା ପରି ମୁହଁ ଠେକୁଆ ଶରୀର
ମାଟି ତଳେ ତାର ଘର,
ଜଙ୍ଗଲ ଭିତରେ ରହୁଥାଏ ସିଏ
ଝିଙ୍କ ଅଟେ ନାମ ତାର ...।୦।

କଅଁଳିଆ ଶିଶୁ ପାଦ ପରି ସତେ
ପଛ ଗୋଡ଼ ପାଦ ଦୁଇ,
ମଣିଷ ପାପୁଲି ପରି ଆଗ ଗୋଡ଼
ପାଞ୍ଚୋଟି ଆଙ୍ଗୁଠି ଥାଇ।
ଦେହରେ ତାହାର ଶର ପରି ପର
ଦିଶଇ ଭାରି ସୁନ୍ଦର
ଝିଙ୍କ ଅଟେ ନାମ ତାର ...।୧।

ସୂରୁଯ ବୁଡ଼ିଲେ ଅନ୍ଧାର ଆସିଲେ
ଗାତରୁ ସେ ବାହାରଇ,
ମହୁଲ, ବାଦାମ, କନ୍ଦମୂଳ ଆଉ
ପାଚିଲା ଫଳ ଖାଅଇ।
ଝିଙ୍କର କାଠିରେ ଲେଖନୀ ହୁଅଇ
ତେଣୁ ସେ ବଂଧୁ ଆମର
ମାଟି ତଳେ ତାର ଘର ...।୨।

# ବଜ୍ର କାପ୍ତା



ବଣ ଜଂଗଲରେ ଜୀବଟିଏ ରହେ
ବଜ୍ରକାପ୍ତା ନାମ ତା'ର,
ଗୋଧି ପରି ଦିଶେ ହେଲେ ତା'ଠୁଁ ବଡ଼
ଲାଞ୍ଜଟି ଲମ୍ବା ତାହାର ...।୦।

ଚାରି ଗୋଡ଼ ତାର ଭାଲୁ ପରି ନଖ
ବେଶି ଲମ୍ବା ଜିଭ ଟିଏ ,
ମୁଣ୍ଡ ଠାରୁ ତାର ଲାଞ୍ଜ ପରିଯନ୍ତେ
କଠିନ କାତି ଗୁଡ଼ିଏ ।
ଗଛ କୋରଡ଼ରେ ସୁଖରେ ସେ ଥାଏ
ଦାନ୍ତ ନାହିଁ ସେ ଜୀବର
ବଜ୍ରକାପ୍ତା ନାମ ତାର ...।୧।

ଦିନରେ ସେ କେବେ ଦେଖା'ନ ଦିଅଇ
ରାତି ସାରା ବୁଲୁ ଥାଏ,
ଜନ୍ଦା, ଝରିପୋକ ଆହାର ତାହାର
ଜିଭରେ ଆଣି ସେ ଖାଏ ।
ଭାରି ଉପକାରୀ ଆମ ପାଇଁ ସିଏ
କେତେ ରୋଗ କରେ ଦୂର
ବଜ୍ର କାପ୍ତା ନାମ ତାର ...।୨।



## ଶାଳିଆ ପତନୀ

କଟାଶର ମୁହଁ ପତଳା ଚେହେରା
ଜଂଗଲର ପଶୁ ଟିଏ,
ରୂପ ତା କାଳିଆ ଲାଞ୍ଜ ଲମ୍ବାଳିଆ
ଶାଳିଆ ପତିନୀ ସିଏ ...।୦।

ଗଛ କୋରଡ଼ରେ ପଥର ଖୋଲରେ
ରହିଥାଏ ଆନନ୍ଦରେ,
ସଂଜ ହୋଇଗଲେ ଅନ୍ଧାର ଆସିଲେ
ଚରି ବୁଲି ସେ ବାହାରେ ।
ଗଛ ଚଢ଼ିବାରେ ଭାରି ଧୁରନ୍ଧର
ନାନା ଜାତି ଫଳ ଖାଏ
ଶାଳିଆ ପତିନୀ ସିଏ ...।୧।

ତା ଦେହର ଗନ୍ଧ ତା କଣ୍ଠର ସ୍ୱର
ଜାଣି ପାରଇ ଶିକାରୀ,
ଅତି କଉଶଳେ ନିରୀହ ଜୀବକୁ
ଆଣଇ ଧୀରେ ସେ ଧରି ,
ଚମଡ଼ା, ମାଉଁସ, ଲାଞ୍ଜଟି ତାହାର
ଜନ ହିତେ ଲାଗି ଥାଏ
ଶାଳିଆ ପତନୀ ସିଏ ...।୨।



## ଏଣ୍ଡୁଅ

ଶିଢ଼୍ଢ଼ ବୁଦା ମୂଳେ ଦେଖ
ବସିଛି ଏଣ୍ଡୁଅ ଭାଇ
ଯାହା ପଚାରିଲେ ତାକୁ
ଖାଲି ମୁଣ୍ଡ ଟୁଙ୍ଗାରଇ ...।୦।

ଦେହରେ ମାଖିଛି ବଟା ହଳଦୀକୁ
ମୁଣ୍ଡରେ ଗୋଲାପି ରଙ୍ଗ ।
ଗାଲରେ ଲେପିଛି ନାଲିଆ କୁଙ୍କୁମ
ଚାଲିରେ କେତେ ଯେ ଭଙ୍ଗ ।
ମୁଣ୍ଡ ଭିତରେ ସେ ରଖିଛି କଉଡ଼ି
କେତେ ଗୁପତେ ଲୁଚାଇ
ବସିଛି ଏଣ୍ଡୁଅ ଭାଇ ...।୧।

ଛକି ଛକି ଯାଇଁ ଧରି ପକାଉଛି
କେତେ କେତେ ପୋକ ଜୋକ
ଝିଣ୍ଟିକା ଧରି ସେ ଗଛ ଡ଼ାଳେ ବସି
ଖାଇ ଦିଏ ଟକ୍ ଟାକ ।
ଅସରପା ତାର ରସଗୋଲା ପରି
ତାକୁ ଖୋଜି ବୁଲୁଥାଇ
ବସିଛି ଏଣ୍ଡୁଅ ଭାଇ ...।୨।



## ମୂଷା

ମୂଷା କଥା ଲାଗେ କେମିତି କେମିତି
ମୂଷା କରେ ହଟ ହଟା ।
ସୂରୁଯ ବୁଡ଼ିଲେ ଅନ୍ଧାର ଆସିଲେ
ଦେଖାଏ ନିଜ ରୂପଟା ...।୦।

ଖୋଜେ ଘରେ ଘରେ ଅଛି କେଉଁଠାରେ
ଧାନ, ବିରି, ମୁଗ, ଚଣା ।
ଚାଉଳ, ଗହମ, କୋଳଥ, ମାଣ୍ଡିଆ
ଖାଇବାକୁ ହୁଏ ବଣା ।
ଅଖା, ଓଳିଆକୁ ମୁନିଆଁ ଦାନ୍ତରେ
କରି ଦିଏ କୁଟୁ କୁଟା
ଦେଖାଏ ନିଜ ରୂପଟା ...।୧।

ଡ଼ୋଇ ମୂଷା କରେ ଲୁଗା କପଡ଼ାକୁ
କାଟି କୁଟି ଛାରଖାର ।
ଗାତୁଆଟି ସଦା ସବୁ କରେ ପଦା
ନାହିଁ ତା ବାଛ ବିଚାର ।
ଛକ ପକ ହୋଇ ଖୋଜେ ଅଛି କାହିଁ
ଆରିଶା କାକରା ପିଠା
ଦେଖାଏ ନିଜ ରୂପଟା ...।୨।



## ଗୁଣ୍ଡୁଚି ମୂଷା

ଖୁପୁରୁ ଖୁପୁରୁ ଡ଼େଇଁ ଡ଼େଇଁ
ଚେଁ, ଚାଁ ଶବଦେ ଗୀତ ଗାଇ
ଡ଼ାଳରୁ ଡ଼ାଳକୁ କୁଦା ମାରୁଥାଏ
ଗୁଣ୍ଡୁଚି ମୂଷାଟି ଅଟେ ସେହି ...।୦।

ମୁହଁଟି ତାହାର ମୂଷା ପରି
ଲାଞ୍ଜରେ ତାହାର ଲୋମ ଭରି
ତିନି ଆଙ୍ଗୁଠିର ଚିହ୍ନ ତା ପିଠିରେ
ଦେଇଛନ୍ତି ରାମ କୃପା ବହି
ଗୁଣ୍ଡୁଚି ମୂଷାଟି ଅଟେ ସେହି ...।୧।

ଅତି ସୁନ୍ଦର ସେ ଦେଖିବାକୁ
ଇଚ୍ଛା ହୁଏ ଥରେ ଧରିବାକୁ
ଭାରି ସିଏ ଶାନ୍ତ ଭାରି ସେ ସରଳ
ହସେ ପରିବେଶ ତାକୁ ପାଇ
ଗୁଣ୍ଡୁଚି ମୂଷାଟି ଅଟେ ସେହି ...।୨।



## ନେଉଳ

ନେଉଳ ଭାଇରେ ନେଉଳ ଭାଇ
ବେତ ବୂଦା ମୂଳେ ବଣ ଜଙ୍ଗଲରେ
କି ସୁଖ ପାଉଛୁ ତୁହି ।
ଆ'ରେ ଆ'ରେ
ପାଳିବି ମୁଁ ତୋତେ ନେଇ ...।୦।

ଅତି ଯତନରେ ସୁନାର କାଠିରେ
ଗଢ଼ିବି ପଞ୍ଜୁରୀ ଟିଏ
ରହିବୁ ତହିଁରେ ସଫା ସୁତୁରାରେ
ନ ଥିବ ଡ଼ର ଟିକିଏ ।
ଗଳାରେ ତୋ ଦେବି ଘୁଙ୍ଘୁର ପିନ୍ଧେଇ
ନାଚିବୁ ତୁ ଥେଇ ଥେଇ
ଆ'ରେ ଆ'ରେ - ଖେଳି ଯିବା ସାଥି ହୋଇ ...।୧।

ଖାଇବାକୁ ଦେବି ଦୁଧ ଭାତ ନିତି
ରୁପା ଥାଳି ଭରି କରି ।
ତୋ ପାଇଁ ଆଣିବି ନଇ ପୋଖରୀରୁ
କେରାଣ୍ଡି, ଭାକୁର ଧରି
ପଢ଼ୁଥିବା ବେଳେ ପାଖେ ବସିଥିବୁ
ମୋ କୋଳେ ଶୋଇବୁ ତୁହି ।
ଆ'ରେ ଆ'ରେ
ଏକା ଏକା ବୁଲୁ   କାହିଁ ...।୨।



## ଜିଆ

ସୂତା ପରି ସରୁ ଜୀବ ଟିଏ
ମାଟି ମା'ର କୋଳେ ରହିଥାଏ ।
ଝର ଝର ହୋଇ ବରଷା ଝରିଲେ
ନାଚି ନାଚି ଖେଳି ଆସେ ସିଏ ...।୦।

ଦାଣ୍ଡରେ ଦୁଆରେ ବାଡ଼ି ବଗିଚାରେ
କ୍ଷେତରେ ସେ ସଦା ରହି ।
ଓଲଟ ପାଲଟ କରଇ ମାଟିକୁ
ଜନମରୁ ଅନ୍ଧ ହୋଇ ।
ଚାଷୀ ଭାଇର ସେ ପ୍ରିୟ ବଂଧୁ ଅଟେ
ମାଟି ଖାଇ ସିଏ ବଂଚି ରହେ
ନାଚି ନାଚି ଖେଳି ଆସେ ସିଏ ...।୧।

ଉପକାର ବିନା ଅପକାର କଥା
କେବେ ସେ ଜାଣଇ ନାହିଁ ।
ନିଜ ଜୀବନକୁ ପର ପାଇଁ ଦିଏ
ବନିଶୀ କଣ୍ଟାରେ ରହି ।
ନାମ ତାର ଜିଆ ସଭିଏଁ ଜାଣନ୍ତି
ତା କଥାକୁ ଅବା ଭାବେ କିଏ
ନାଚି ନାଚି ଖେଳି ଆସେ ସିଏ ...।୨।

## କୁମ୍ଭୀର



କାଠ ଗଣ୍ଡି ପରି ଦେହ ଦିଶୁଥାଇ
ମୁହଁଟି ଲମ୍ୱା ତାହାର ।
ଲାଞ୍ଜର ଉପରେ କରତର କଣ୍ଟା
ତା ନାମ ଅଟେ କୁମ୍ଭୀର ...।୦।

ଗଭୀର ପାଣିରେ, ନଇରେ, ଗଣ୍ଡରେ
ରହିଥାଏ କରି ଘର ।
ଖାଅଇ ଅନେକ ଜାତି ଜାତି ମାଛ
ଯେତେ ସବୁ ଜଳଚର ।
ମଣିଷକୁ ଦେଖି ଧରିବ କେମିତି
ମନରେ କରେ ବିଚାର
ତା ନାମ ଅଟେ କୁମ୍ଭୀର ...।୧।

ଥଣ୍ଡିଆ, ମାଟିଆ, ଘଡ଼ିଆଳ ପୁଣି
ବଉଳା ତାହାର ଜାତି ।
ବରଷକୁ ଥରେ ଅଣ୍ଡା ଦେଇ ଥାଏ
ଉଚ୍ଚ ବାଲି ଜାଗା ଦେଖି
ଚମଡ଼ା ତାହାର କଣ୍ଟା ଆଉ ଦାନ୍ତ
ଲାଗଇ କାମେ ଆମର
ତା ନାମ ଅଟେ କୁମ୍ଭୀର ...।୨।

# ଡଲଫିନ୍



ଏମିତି ମାଛ ଟିଏ
ସାଗର ଜଳେ ରହେ ।
ମାଛଙ୍କ ପରି ଅଣ୍ଡା ନ ଦେଇ
ଛୁଆଁଳ ଛାଡ଼ି ଥାଏ
ଡଲ୍‌ଫିନ୍ ଟି ସିଏ ...।୦।

କାତି ନ ଥାଇ ଧୂସର ରଂଗ
ଟିକିଏ ଲମ୍ବା ମୁହଁ ,
ଦେଖିବାକୁ ସେ ଭାରି ସୁନ୍ଦର
ଚିକ୍‌ଣ ତାର ଦେହ ।
ଭାରି ବୁଦ୍ଧିଆ, ଭାରି ଚତୁର
ମେଳ ଭିତରେ ଥାଏ
ଡଲ୍‌ଫିନ୍‌ଟି ସିଏ ...।୧।

ଶିଶିରୀ ପରି ଶବଦ କରି
କଥା ସେ ହୋଇପାରେ
ମଣିଷକୁ ସେ ଭଲ ପାଅଇ
ପୋଷା ମାନଇଁ ଧିରେ ।
କଉତୁକିଆ ଖେଳ ତାହାର
ମନକୁ କିଣିନିଏ
ଡଲଫିନ୍‌ଟି ସିଏ ...।୨।



# ପେଙ୍ଗୁଇନ୍

ଡଉଲ ଡାଉଲ ଚେହେରା ତାହାର
ଚାଲୁଥିଲେ ଦିଶେ ଭାରି ସେ ସୁନ୍ଦର
ନାଆଁ ତାର ପେଙ୍ଗୁଇନି ।
ଥରେ ଦେଖିଥିଲେ ଜୀବନରେ ତାକୁ
ମନରୁ ଭୁଲି ହୁଏନି ...।୦।

କଳା ଧଳା ମିଶା ରୂପଟି ତାହାର
ପେଟ ଧୋବ ଫର ଫର
ଦର ଗଢ଼ା ପରି ଡ଼େଣା ଦୁଇ ଗୋଟି
ଟିକି ଲାଞ୍ଜଟିଏ ତା'ର ।
ଲାଣ୍ଡିଆ ମୁଣ୍ଡଟି ସୁନ୍ଦର ମୁହଁଟି
ଥଣ୍ଟଟି ହଳଦୀ ବନି
ମନରୁ ଭୁଲି ହୁଏନି ...।୧।

ବରଫ ଦେଶରେ ଜନମ ତାହାର
ଥଣ୍ଡାକୁ ସେ ଡ଼ରେ ନାହିଁ ।
ବରଫ ପାଣିରେ ଅନେକ ବେଗରେ
ପହଁରି ପାରଇ ସେହି ।
ଖାଏ ସେ କଙ୍କଡ଼ା, ପୋକ, ଜୋକ, ମାଛ
ଭାରି ମଜା ତା ଜୀବନୀ
ମନରୁ ଭୁଲି ହୁଏନି ...।୨।



## କଇଁଛ

ଜଳରେ ରହେ ସେ ସ୍ଥଳରେ ରହେ
ଟାଣୁଆ ତା ଦେହ କଇଁଚ ସିଏ ...।୦।

ଆଗ ଦୁଇ ଗୋଡ଼ ପଛଠୁଁ ବଡ଼
ଚାରି ଗୋଡ଼େ ଚାଲେ ହେଲେ ମନ୍ଥର ।
ପାଣିରେ ତା ଗତି ଚାଲିବାଠୁଁ ବେଶୀ
ଟିକିଏ ଯାଏ ସେ ଟିକିଏ ରହେ
ଟାଣୁଆ ତା ଦେହ କଇଁଛ ସିଏ ...।୧।

ଭାରି ଚୁଙ୍ଗୁ-ଚୁଙ୍ଗା ଚତୁର ସିଏ
ବିପଦ ବେଳରେ ପଥର ଟିଏ ।
ଚାରି ଗୋଡ଼ ମୁହଁ ଖୋଳରେ ପୂରେଇ
ମଲାପରି ସତେ ପଡ଼ି ସେ ରହେ
ଟାଣୁଆ ତା ଦେହ କଇଁଛ ସିଏ ...।୧।

ପୋକ ଜୋକ ମାଛ ଆହାର ତା'ର
ଭାରି ସୁନ୍ଦରିଆ ଚାଲି ତାହାର ।
ଦରିଆ କଇଁଛ ଭାରି ବଡ଼ ବଡ଼
ତା ଖୋଳରେ କେତେ ଦରବ ହୁଏ
ଟାଣୁଆ ତା ଦେହ କଇଁଛ ସିଏ ...।୨।



## କଙ୍କଡ଼ା

ନଈ ପୋଖରୀରେ ଝରଣା ଜଳରେ
ଜୀବଟିଏ ଥାଏ ରହି ।
ତା ନାମ କଙ୍କଡ଼ା ଚାଲେ ସେ ବଙ୍କେଇ
ଦଶଟି ଗୋଡ଼ରେ ସେହି
ସଅଳ ସଅଳ ହୋଇ ...।୦।

ମିଠା ଆଉ ଲୁଣି ଦୁଇଟି ଜାତିର
ଲୁଣି ରହେ ସାଗରରେ,
ମିଠା କଙ୍କଡ଼ାଟି ମାଟିଆ ନାରଙ୍ଗୀ
ଲୁଣି ଧୂସର ରୂପରେ
କେଉଟ ଭାଇର ଜାଲରେ କଙ୍କଡ଼ା
ଆସେ ଧିରେ ଛାଣି ହୋଇ
ବିକିରି ହେବାର ପାଇଁ ...।୧।

କଙ୍କଡ଼ା ଗାତରେ ବିଲୁଆ ନନାଟି
ଭରି ଦେଇ ତାର ଲାଞ୍ଜ
ଧରିଆଣି ଖାଏ, କଙ୍କଡ଼ା ବୁଝେନା
ନନାର ଚତୁର ଖଞ୍ଜ ।
କଙ୍କଡ଼ା ତିଅଣ ହୋଇଥିଲେ ଘରେ
ଭାତ ଜମା ଅଣ୍ଟେ ନାହିଁ
ହାଣ୍ଡି ଯାଏ ଖାଲି ହୋଇ ...।୨।



## ସାପ

ଦଉଡ଼ି ପରି ତା ରୂପ
ନାଆଁଟି ତାହାର ସାପ ।
କେତେ ଯେ ରଂଗର କେତେ ଯେ ଜାତିର
କିଏ ରଣା କିଏ ତମ୍ପ ...।୦।

''ନାଗ'' ର ଜାତିରେ ଅନେକ ପ୍ରକାର
କଳା କେ ହଳଦୀ ବନ ।
ମହା ବିଷଧର ଥରେ ଚୋଟ ଦେଲେ
ଜୀବର ଯାଏ ଜୀବନ ।
ରଣା କରି ଦିଏ ଘଡ଼ି କରେ ବଣା
ସହି ହୁଏ ନାହିଁ କୋପ
ନାଆଁଟି ତାହାର ସାପ ..।୧।

ଭୟଙ୍କର ରୂପ, ଅଜଗର ରହେ
ଘନ ଜଙ୍ଗଲ ଭିତରେ
ବଣର ପଶୁକୁ ଗୋଟା ଗୋଟା ଗିଳି
ଶୁଏ ନିଘୋଡ଼ ନିଦରେ ।
ହେଲେ ସାପ ଆମ ବଂଧୁ କହିବାରେ
ହେବ ନାହିଁ କିଛି ପାପ
ନାଆଁଟି ତାହାର ସାପ ...।୨।



## ବେଙ୍ଗ

ସୂରୁଯ ବୁଡ଼ିଲେ ସଂଜ ଆସିଗଲେ
ଖୁପୁରୁ ଖୁପୁରୁ ଡ଼େଇଁ
ବାହାରି ପଡ଼ନ୍ତି ବେଙ୍ଗ ରାଜା, ରାଣୀ
ରାଇଜ ବୁଲିବା ପାଇଁ ...।୦।

ଏ ଘର ସେ ଘର ଏ ଓଳି ସେ ଓଳି
ବୁଲନ୍ତି ସେ ଆନନ୍ଦରେ ।
କେତେ ପୋକ ଜୋକ କେବେ ଝଡ଼ିପୋକ
ଖାଆନ୍ତି ଖୁସି ମନରେ ।
ସଫା ରଖନ୍ତି ସେ ଆମ ପରିବେଶ
ବଂଧୁ ସେ ଆମର ହୋଇ
ଖୁପୁରୁ ଖୁପୁରୁ ଡ଼େଇଁ ...।୧।

କଳା ମେଘ ଦେଖି ଗୀତ ଗାଆନ୍ତି ସେ
ପୋଖରୀ ହୁଡ଼ାରେ ବସି
ଝଡ଼ି ବରଷାରେ ସାରୁ ବୁଦା ମୂଳେ
ନାଚନ୍ତି ହୋଇ ସେ ଖୁସି
ଚଗଲା ପିଲାଙ୍କୁ ଦେଖି ସେ ଡ଼ରନ୍ତି
କାଳେ ତାଙ୍କୁ ଯିବେ ନେଇ
ଖୁପୁରୁ ଖୁପୁରୁ ଡ଼େଇଁ ...।୨।



# ଚିଙ୍ଗୁଡି

ଚିଙ୍ଗୁଡି ଟି ମାଛ ନୁହେଁ
ପାଣିର ସେ ପୋକଟିଏ
ସାଗର ଭିତରେ ନଈ ପୋଖରୀରେ
ଆନନ୍ଦରେ ରହିଥାଏ ...।୦।

ଖଣ୍ଡ ଖଣ୍ଡ ମାଂସ ମିଶି ତାର ଦେହ
ଯୋଡ଼ି ହୋଇଥାଏ ରହି ,
ମୁଣ୍ଡ ଠାରୁ , ଲାଞ୍ଜ ମୂଳ ପରିଯନ୍ତେ
ଖୋଳଟି ଭିତରେ ଥାଇ ।
ପେଟ ତଳ ତାର ସତେ ଘାସ ଦଳ
ଆହୁଲାର କାମ ଦିଏ
ଚିଙ୍ଗୁଡ଼ି ଟି ମାଛ ନୁହେଁ ...।୧।

ମାଟିଆ ଧୂସର ରଂଗ ଅଟେ ତା'ର
ଦେଖିବାକୁ ସୁନ୍ଦରିଆ
ତେଲ କଡ଼େଇରେ ଛାଡ଼ି ଦେଲେ ତାକୁ
ତା ରଂଗ ହୁଏ ନାଲିଆ ,
ଚିଙ୍ଗୁଡ଼ିର ଭଜା , ତିଅଣ , ଆଚାର
ଖାଇଲେ ମନକୁ ମୋହେ
ଚିଙ୍ଗୁଡ଼ିଟି ମାଛ ନୁହେଁ ...।୨।

## ଓଧ



ନେଉଳ ପରି ଦେଖିବାକୁ ସେ
ଦେହଟି ବଡ଼ ତାର
ରଂଗ ତାହାର ଧୂସର କଳା
ନୁହେଁ ସେ ଅସୁନ୍ଦର
ନାଆଁଟି ଓଧ ତା'ର ...।୦।

ନଈ ପୋଖରୀ, ସାଗର ଜଳେ
ଦେଖା ଯାଅଇ ସିଏ ,
ମାଛ, କଙ୍କଡ଼ା ,ଗେଣ୍ଡା, ଶାମୁକା
ଜଳ ଜୀବକୁ ଖାଏ ।
ଗଭୀର ଜଳେ ପହଁରି ବାରେ
ଭାରି ସେ ଧୁରନ୍ଧର
ନାଆଁଟି ଓଧ ତା'ର ...।୧।

ଚମଡ଼ା ତାର ଭାରି ଚିକ୍‌ଣ
ଲାଗଇ ନାହିଁ ପାଣି
ସେ ଯଦି କାର ପୋଷା ମାନଇ
ଦିଅଇ ମାଛ ଆଣି
ତା ମିଠା ମାଂସ ଚମଡ଼ା ଲାଗି
ଜୀବନ ଯାଏ ତାର
ନାଆଁଟି ଓଧ ତାର ...।୨।



## ମାଛି

ଛୋଟ ଜୀବଟିଏ ଦେଖିବାକୁ ସିଏ
ଭାରି ବଡ଼ ତାର କାମ ।
ଆମ ପାଇଁ ସିଏ ଅତି ଭୟଙ୍କର
ମାଛି ଅଟେ ତାର ନାମ ...।୦।

ରୂପ ତାର କଳା ମାଟିଆ ଧୂସର
ଛୋଟିଆ ଚେକା ମୁଣ୍ଡଟି
ସବୁ ପକ୍ଷୀ ଠାରୁ ଉଡ଼ିପାରେ ଆଗେ
ଛୋଟ ତା ଡ଼େଣା ଦୁଇଟି ।
ସରୁଆ ଜିଭରେ ମିଠା ଖାଇବାକୁ
ହୁଏ ସେ ପାଗଳ ସମ
ମାଛି ଅଟେ ତାର ନାମ ...।୧।

ହଇଜା ରୋଗୀର ଝାଡ଼ା ବାନ୍ତିରୁ ସେ
ଜୀବାଣୁ ଆଣେ ପାଦରେ ।
ଯେଉଁଠି ବସଇ ସେଇଠି ଛାଡ଼ଇ
ଦେଖା ଯାଏନା ଆଖିରେ ।
ତା ପାଇଁ ମରନ୍ତି ଶହ ଶହ ଲୋକ
ସେ ଅଟେ ଆମର ଯମ
ମାଛି ଅଟେ ତାର ନାମ ... ।୨।

## ମଶା



ନିତି ସଂଜ ହେଲେ ଅଂଧାର ଆସିଲେ
ଘରକୁ ଆସଇ ମଶା ମଉସା
କାନ ପାଖେ ଗାଏ ଗୁଣୁ ଗୁଣୁ ଗୀତ
ଏଇତ ତାହାର ନିତି ବେଉସା ...।୦।

ଲୁଚି ଛପି ଆସି ପାଖରେ ବସଇ
କାହାକୁ ଖବର ନାହିଁ ।
ଧିରେ ଧିରେ ତାର ଶୁଣ୍ଢକୁ ପୁରେଇ
ରକତ ଶୋଷି ନିଅଁଇ ।
ଆ ଦେହ ଜୀବାଣୁ ତା ଦେହରେ ଛାଡେ
ଡାକତର ଟାଣୁଥାଏ ପଇସା
ଏଇତ ତାହାର ନିତି ବେଉସା ...।୧।

ମେଲେରିଆ ରୋଗ ଜୀବାଣୁ ଆଣଇ
ମାଇ ସେ ଏନୋଫେଲିସ
ବସିବା ଢ଼ଙ୍ଗରୁ ଚିହ୍ନି ହୁଏ ତାକୁ
ଜାଣିବା ଲୋଡ଼ା ନିହାତି
ପଚା ସଢ଼ା ଜାଗା ମଶା ମଉସାର
ବଅଁସ ବଢ଼ାଏ ଅତି ସହସା
ଏଇତ ତାହାର ନିତି ବେଉସା ...।୨।

# ପ୍ରଜାପତି



ସ ଅଁ ବାଲୁଆରୁ ଜନମ ଯାହାର
ସବୁରି ଯେ ପ୍ରିୟ ଅତି ।
ନାହିଁ ତାର ବସା ଠାକୁର ଭରସା
ନାଆଁ ତାର ପ୍ରଜାପତି ...।୦।

ନାଳି, ଧଳା, କଳା, ଧୂସର ଛବିଲା
ଅନେକ ରଂଗ ତାହାର,
ଛୋଟ ବଡ଼ ହୋଇ କେତେ ଭଳି ଭଳି
ଦିଶଇ କେତେ ଜାତିର ।
ଖରା ବରଷାକୁ ଶୀତ କାକରକୁ
ନଥାଏ ତାହାର ଭୀତି
ନାଆଁ ତାର ପ୍ରଜାପତି ...।୧।

ପଡ଼ିଆ, ବିଲରେ, ବଣ, ପାହାଡ଼ରେ
ନିତି ବାଡ଼ି ବଗିଚାରେ
ଫଳରୁ ଫୁଲକୁ ଉଡ଼ି ବୁଲୁଥାଏ
ମଧୁ ଖାଇ ହରଷରେ ।
ତା ପାଇଁ ସୁନ୍ଦର ଆମ ପରିବେଶ
ମନେ ଭରି ଦିଏ ଶାନ୍ତି
ନାଆଁ ତା'ର ପ୍ରଜାପତି ...।୨।

# ମହୁମାଛି



ଗୁଣୁ ଗୁଣୁ ସୁରେ ଗୀତ ଗାଇ ଗାଇ
ଉଡ଼ିଯାଏ ମହୁମାଛି ।
ଫୁଲରୁ ଫୁଲରୁ ମହୁ ଶୋଷି ଆଣି
ଆମ ପାଇଁ ରଖେ ସଞ୍ଚି ...।୦।

ଟିକି ଜୀବଟି ସେ ତା ଟିକି ଡ଼େଣାରେ
ଉଡ଼ିପାରେ ବହୁ ଦୂର,
କାଳିଆ ମୁହଁକୁ ଢ଼ାଉଆ ଦେହଟି
ଦିଶଇ ଭାରି ସୁନ୍ଦର
ନାହୁଡ଼ରେ ତାର କରେ ସେ ଆଘାତ
ସାଙ୍ଗ ସାଥି ସଂଗେ ମିଶି
ଫୁଲରୁ ଫୁଲରୁ ମହୁ ଶୋଷିଆଣି
ଆମ ପାଇଁ ରଖେ ସଞ୍ଚି ...।୧।

ଆପଣା ପାଟିରୁ ଲାଳ କାଢ଼ି ସିଏ
ଗଢ଼ଇ ସୁନ୍ଦର ଘର
ଅଗଣିତ କରେ କୋଠରୀ ତହିଁରେ
ଯହିଁ ମହୁ ଭର ପୂର ।
ଛୋଟ ଜୀବ ସିନା ମହତ ତା କାମ
ତା ପରି ସତେ କେ ଅଛି
ଫୁଲରୁ ଫୁଲରୁ ମହୁ ଶୋଷି ଆଣି
ଆମ ପାଇଁ ରଖେ ସଞ୍ଚି ...।୨।

# କୋଇଲି



ଫଗୁଣ ଆସିଲା ଆମ୍ବ
ବହିଲା ବସନ୍ତ ଧିରେ
ଗହନ ବନରୁ କୋଇଲି
ବସିଲା ଆମ୍ବ ଡ଼ାଳରେ

ମଳୟର ସାଥେ ତାଳ ମିଳାଇଲା
କୁହୁ କୁହୁ ଗୀତ ଗାଇ
ବଉଳ ରୁ ଆମ୍ବ କଷି ଜନମିଲେ
ଭଅଁର ପରଶ ପାଇ ।
କୋଇଲିକୁ ଦେଖି ଝିଙ୍କାରୀ ଗାଇଲେ
ମଧୁ ଗୀତି ସୁମଧୁରେ
ଗହନ ବନରୁ କୋଇଲି ଆସିଲା
ବସିଲା ଆମ୍ବ ଡ଼ାଳରେ ...।୧।

ରାତି ନ ପାହୁଣୁ କୋଇଲି ଡ଼ାକିଲା
ଗାଆଁ ଗାଆଁ ବୁଲି ବୁଲି
ଆସିଛି ଦେଖ, ମୁଁ ମଳୟକୁ ନେଇ
ହସ ଆଜି ମନ ଖୋଲି
ବରଷକ ପାଇଁ ଯିବି ଘୋର ବନେ
ତୁମ ଠୁଁ ବହୁ ଦୂରରେ
ଗହନ ବନରୁ କୋଇଲି ଆସିଲା
ବସିଲା ଆମ୍ବ ଡ଼ାଳରେ ...।୨।

# ମୟୂର



ଆକାଶେ ଯେବେ କଳା ବାଦଲ
ଆସଇ କରି ଅନ୍ଧାର,
ପାହାଡ଼ ତଳେ ପୁଚ୍ଛକୁ ଟେକି
ଆନନ୍ଦେ ନାଚେ ମୟୂର ...।୦।

ରହଇ ସିଏ ବଣ ପାହାଡ଼େ
କୁଟା କାଠିରେ ଘର,
ଛୋଟି ଛୋଟିର ସାପ, ଏଣ୍ଡୁଅ
ଅଟେ ଆହାର ତାର।
ବେଶି ଦୂରକୁ ପାରେନା ଉଡ଼ି
ଡେଣାକୁ ବଡ଼ ଶରୀର
ଆନନ୍ଦେ ନାଚେ ମୟୂର ...।୧।

ଶାନ୍ତ, ସରଳ, ନିରୀହ ପକ୍ଷୀ
ତା ପରି କେହି ନାହିଁ,
ଗୁଣେ ଯେମିତି ରୂପେ ସେମିତି
ତୁଳନା ତାର ନାହିଁ।
ସେ ପରା ଅଟେ ଜାତୀୟ ପକ୍ଷୀ
ଆମ ଦେଶ ଭାରତର
ଆନନ୍ଦେ ନାଚେ ମୟୂର ...।୨।



# ଶୁଆ

ସବୁଜ ସୁନ୍ଦର ପକ୍ଷୀଟିଏ
ନାଲିଆ ତାହାର ଥଣ୍ଟଟିଏ ।
ଗଳାରେ ଦିଶଇ କାଳିଆ କଣ୍ଠିଟି
ଆଉ କେହି ନୁହଁ ଶୁଆ ସିଏ ...।୦।

ବଣ ଜଙ୍ଗଲରେ ରହୁଥାଏ
ପାଚିଲା ଫଳକୁ ଭଲପାଏ ।
ଶୀତ ବସନ୍ତରେ ଦେଖାଦିଏ
ସୁମଧୁର ସୁରେ ଗୀତ ଗାଏ ।
ଦଳ ଛାଡ଼ି ସିଏ ଏକୁଟିଆ କେବେ
ନିମିଷକ ପାଇଁ ସେ ନଯାଏ
ଆଉ କେହି ନୁହଁ ଶୁଆ ସିଏ ... ।୧।

ଛୁଆଟି ଦିନରୁ ଆଣି ଧରେ
ପାଳ ତାକୁ ରଖି ପଞ୍ଜୁରୀରେ ।
ଖାଇ ବାକୁ ଦିଅ ଦୁଧ ଭାତ
ନାନା ଜାତି ଫଳ ଭିଜାବୁଟ
ରାମ ନାମ ହରି ନାମ ଶିଖାଇଲେ
ଗାଇବ ସେ ବଂଚି ଥିବା ଯାଏ
ଆଉ କେହି ନୁହଁ ଶୁଆ ସିଏ ...।୨।



# ବଣି

ବଣିରେ ବଣି ତୁ କେଡ଼େ ସୁନ୍ଦର
ଆହୁରି ସୁନ୍ଦର ଯୋଡ଼ି ତୋହର ।
ଖିଚିରି ମିଚିରି ଶବଦକୁ ତୋର
ସତେରେ ମୋହର ଭାରି ଆଦର ...।୦।

ପାଦରେ ଥଣ୍ଟରେ ଆଖି ପତା ତଳେ
ବୋଳିଛୁ ହଳଦୀ କେଉଁଠୁ ଆଣି ,
ମୁଣ୍ଡରେ ବୋଳିଛୁ ଚିକ୍‌ଣ କଳାକୁ
ଦେହରେ ଢ଼ାଉଆ ତଇଳ କିଣି ।
ଦୁଇ ଡ଼େଣା ତଳେ ଚିତା ପକାଇଛୁ
ଉଡ଼ିଲେ ତୁ ଦିଶୁ ଭାରି ସୁନ୍ଦର
ବଣିରେ ବଣି ତୁ କେଡ଼େ ସୁନ୍ଦର ...।୧।

ଆ'ରେ ଆ' ତୁ ରଖିବି ତତେ ମୁଁ
ଗଢ଼ି ଦେଇ ସୁନା ପଞ୍ଜୁରୀ ଗୋଟି
ଖାଇବାକୁ ଦେବି ଝିଣ୍ଟିକା ଆଣି ମୁଁ
ଗହିରୀ ବିଲରୁ ଖୋଜି ସାଉଁଟି,
ଦେବି ବରଫଳ ପାଚିଲା ଖଜୁରୀ
ସୁଖେ ବିତିଯିବ ଦିନ ତୋହର
ବଣିରେ ବଣି ତୁ କେଡ଼େ ସୁନ୍ଦର ...।୨।

# କାଠହଣା ଚଢ଼େଇ



ଆମ ଦେଶରେ ସବୁଠି ଦିଶେ
ଏମିତି ପକ୍ଷୀ ଟିଏ ,
ମୁଣ୍ଡରେ ତାର ନାଲିଆ ଠେକା
କାଠହଣାଟି ସିଏ ...।୦।

ନୁହେଁ ସେ ବଡ଼ ନୁହେଁ ସେ ସାନ
କପୋତ ଟିଏ ପରି ,
ବାଦାମୀ ରଂଗ ଡ଼େଣା ଦୁଇଟି
ସୁନ୍ଦର ଦିଶେ ଭାରି ।
ଦେହକୁ ବଡ଼ ଥଣ୍ଟ ତାହାର
ଲୁହାଠୁଁ ଟାଣ ଥାଏ
କାଠହଣାଟି ସିଏ ...।୧।

ଉଚ୍ଚା ଗଛର ମୋଟା ଡ଼ାଳରେ
ଥଣ୍ଟରେ ଗାତ କରି ,
ଖୁସିରେ ସଦା ରହିଥାଏ ସେ
ତା ପରିବାର ଧରି ।
ଗଛରେ ଥିବା ପୋକ ଜୋକଙ୍କୁ
ଖୋଜି ଖୋଜି ସେ ଖାଏ
କାଠହଣାଟି ସିଏ ...।୨।

# ହଂସ



ଢ଼ଳି ଢ଼ଳିକା ଚାଲଇ ସିଏ
ଦେହଟି ତାର ମୋଟ.
ଲମ୍ବା ବେକରେ ଟିକି ମୁଣ୍ଡଟି
ଗୋଡ଼ ଦୁଇଟି ଛୋଟ ।
ତା ନାମ ହଂସ ମୁହଁରେ ତାର
ଚେପଟା ଗୋଟେ ଥଣ୍ଟ ...।୦।

ପକ୍ଷୀ ସିନା ସେ ବେଶି ଦୂରକୁ
ପାରେନା ଜମା ଉଡ଼ି
ଦେହକୁ ତାର ଓଜନ ବେଶି
ଉଡ଼ିଲେ ଯାଏ ପଡ଼ି
ଛୋଟିଆ ପର ଚିକ୍‌ଣ ଧଳା
ରଙ୍ଗା ପରି ତା ଥାଟ
ଦେହଟି ତାର ମୋଟ ...।୧।

ଖାଅଇ ପୋକ, ଗେଣ୍ଡା, ଶାମୁକା
ପାଣିରୁ ବାଛି ବାଛି ।
ଚଞ୍ଚଳ ସିଏ ପହଁରି ପାରେ
ଦିଶୁଥାଏ ତା ପିଠି ।
ହଂସ ଗାଅଇ କ କ କ ଗୀତ
ଖୁସିରେ କରି ନାଟ
ଦେହଟି ତାର ମୋଟ ...।୨।

## କୁକାବୁରା (ଅଷ୍ଟ୍ରେଲିଆ ଚଢ଼େଇ)

ଏମିତି ପକ୍ଷୀ ଏ ଦୁନିଆଁରେ ଅଛି
ଆମ ପରି ହସୁଥାଏ
ହସକୁରା ତାକୁ କହନ୍ତି ସଭିଏଁ
କୁ କା ବୁରା ଅଟେ ସିଏ ...।୦।

ମାଛ ରଙ୍କା ପରି ପକ୍ଷୀଟିଏ ସିଏ
ରୂପଟି ଅଲଗା ତାର,
ଛବି ଛବିଲିଆ ତା ଡ଼େଣା ଦୁଇଟି
ଲାଞ୍ଜଟି ଲମ୍ବା ସୁନ୍ଦର।
ଦେହ ତୁଳନାରେ ତା ମୁଣ୍ଡ ତା ଥଣ୍ଟ
ଅଟଇ ବଡ଼ ଟିକିଏ
କୁ କା ବୁରା ଅଟେ ସିଏ ...।୧।

ଖାଏ ସିଏ ସାପ, ବେଙ୍ଗ ଝିଟିପିଟି
ପୋକ, ଜୋକ, ବୁଢ଼ିଆଣୀ
ନିଜ ଓଜନ ଠୁଁ ଅଧିକ ଓଜନ
ଶିକାର ସେ ପାରେ ଆଣି।
ଭାରି ସ୍ନେହ ମେଳାପି ଭାରି ସହଯୋଗୀ
ମଣିଷ କୁ ଭଲ ପାଏ
କୁ କା ବୁରା ଅଟେ ସିଏ ...।୨।



## ମାଛ

ଗୋଟିଏ ଜୀବ ଏ ଜଗତରେ
ନାଆଁଟି ତାର ମାଛ
ଜୀବନେ କେବେ ଶୁଅଇ ନାହିଁ
ଏ କଥା ନୁହେଁ ମିଛ ...।୦।

ଭାକୁର, ରୋହି, କଳା ବାଇଁଶୀ
କେରାଣ୍ଡି ମହୁରାଳୀ,
ନଈ ପୋଖରୀ ଭିତରେ କେତେ
ଥାଆନ୍ତି ଭଳି ଭଳି।
ଚିତଳ, ଫଳି, ଇଲିସି ଝୋଳ
ଟାଣଇ ବେଶି ଭାତ
ଏ କଥା ନୁହେଁ ମିଛ ...।୧।

କଉ, ମାଗୁର, ସିଙ୍ଗି, ଡିଅଣ
ଅରୁଚି କରେ ଦୂର
ରୋହି ମାଛର ପିତ୍ତ ଖାଇଲେ
ଦେହକୁ ହିତ କର।
ମାଛର ନାହିଁ ପର ଅପର
ସଭିଏଁ ତାର ମିତ
ଏକଥା ନୁହେଁ ମିଛ ...।୨।

# କୁକୁଡ଼ା



ରାତି ପାହିବାର ଖବର
ଯିଏ ଦିଏ ଆମକୁ,
ତା ନାମ ଅଟଇ କୁକୁଡ଼ା
ଆମେ ରଖୁ ତାହାକୁ ...।୦।

କେତେ ରଂଗେ ତାର ରୂପଟି
ଧଳା, ନାଲିଆ, କଳା
ଚିକ୍‌ଣ ଦେହଟି ତାହାର
ସତେ ତଇଳ ବୋଳା ।
ମୁଣ୍ଡରେ ନାଲିଆ ମୁକୁଟ
କିଣି ନିଏ ମନକୁ
ତା ନାମ ଅଟଇ କୁକୁଡ଼ା
ଆମେ ରଖୁ ତାହାକୁ ...।୧।

ଖାଏ ସିଏ, ଧାନ ଚାଉଳ
ପୋକ, ମାଣ୍ଡିଆ, କୁଣ୍ଡା
ରାଣୀ କୁକୁଡ଼ାଟି ଦିଅଇ
କେତେ ଆମକୁ ଅଣ୍ଡା ।
ପୋଷିଲେ ଯତନେ ତାହାକୁ
ଲାଭ ମିଳେ ଆମକୁ
ତା ନାମ ଅଟଇ କୁକୁଡ଼ା
ଆମେ ରଖୁ ତାହାକୁ ...।୨।



# ପାରା

ଘୁମୁରୁ ଘୁମୁରୁ ଗୀତ ଗାଇ ଗାଇ
ନାଚ କରୁଥାଏ ଯିଏ ।
ସୁନ୍ଦରିଆ ଆଖି ମୁନିଆଁ ଥଣ୍ଟି
କେହି ନୁହେଁ ପାରା ସିଏ ...।୦।

ଧଳା, କଳା, ଆଉ ମାଟିଆ, ଛବିଳା
କେତେ ରଂଗେ ରୂପ ତାର
ମୁଗ, ବିରି, ଧାନ, ସୋରିଷ, ମାଣ୍ଡିଆ
ଅଟଇ ତାର ଆହାର
କୋଠା, ପାରା ପେଟି, ଦେଉଳ ଖୋପରେ
ଆନନ୍ଦରେ ସିଏ ରହେ
କେହି ନୁହେଁ ପାରା ସିଏ ...।୧।

ପାରାରେ ପାରା ସେ ଲୋଟଣି ପାରାଟି
ଉଡ଼ିଯାଏ ବହୁଦୂର
ନୀଳ ଆକାଶରେ ଓଲଟି ପାଲଟି
ଦେଖାଏ କେତେ ଯେ ଖେଳ ।
ବୋଲ ମାନିଥିଲେ ଚିଠି ଧରି ଥଣ୍ଟେ
ଉଡ଼ି ଉଡ଼ି ବାଣ୍ଟି ଦିଏ
କେହି ନୁହେଁ ପାରା ସିଏ ...।୨।

## ବଗ



ସରୁଆ ସରୁଆ ଦୁଇ ନଳି ଗୋଡ଼
ରୂପଟି ତାହାର ଧୋବ ଫର ଫର
ଲମ୍ୱା ଥଣ୍ଟିରେ ସିଏ
ପୋଖରୀ କୂଳରେ ଛକି ଛକି ବସି
ମାଛଟିଏ ଧରି ଖାଏ ।
ବଗ ଅଟେ ନାମ ତାର
କଳା ମେଘ ତଳେ ଉଡ଼ି ଯାଉଥିଲେ
ଦିଶଇ ବଡ଼ ସୁନ୍ଦର ...।୦।

ଗାଆଁ ଆମ୍ବ ତୋଟା ଉଚ୍ଚ ବରଡ଼ାଳେ
ବାନ୍ଧିଥାଏ ବସା ତା'ର
ବଗୁଲୀ ସହିତ ଖୁସିରେ ଥାଏ ସେ
ନାହିଁ ଦୁଃଖ ନାହିଁ ଡ଼ର ।
ଖରା ବରଷାରେ, ଶୀତ, କାକରରେ
ଭରସା ତାକୁ ଠାକୁର
ବଗ ଅଟେ ନାମ ତାର ...।୧।

କୋଳଥ, ସୋରିଷ, ବିରି କିଆରୀରେ
ସକାଳୁ ସଂଜ, ଶୀତରେ
ଜଗି ଜଗି ଖାଏ ନାନା ପୋକ-ଜୋକ
ସଦା ସେ ଚାଷୀ ହିତରେ
ମାଉଁସ ଲୋଭରେ ଧରେ ତାକୁ କେଳା
ମାରି ବାଣ, ଧନୁଶର
ବଗ ଅଟେ ନାମ ତାର ...।୨।

## ମାଛରଙ୍କା



ବଣି ଚଢ଼େଇ ଠୁଁ ଅଳପ ବଡ଼ ସେ
ପାରା ଠାରୁ ଟିକେ ସାନ,
ଦେଖିବାକୁ ଭାରି ସୁନ୍ଦର ପକ୍ଷୀଟି
ମାଛରଙ୍କା ସିଏ ଜାଣ ...।୦।

ଗାଡ଼ିଆ, ପୋଖରୀ, ନଈର କୂଳରେ
ସବୁ ଦିନେ ଦେଖା ଯାଏ,
ମଟାଳ ମାଟିରେ ଗାତ ଟିଏ କରି
ଆନନ୍ଦେ ତହିଁରେ ରହେ।
ଚିତିରିଆ ଡ଼େଣା କଳା ପଟି ଟଣା
ଥଣ୍ଟ ତା କତୁରୀ ମୁନ
ମାଛରଙ୍କା ସିଏ ଜାଣ ...।୧।

ମାଛ ଧରିବାରେ ଭାରି ସେ ନିପୁଣ
ଆକାଶରେ ରହି ଥିର,
ମାଛକୁ ନିଅଇ ତୀର ପରି ଆସି
ଟାଣୁଆ ଥଣ୍ଟରେ ତାର।
ଗଛ ଡ଼ାଳେ ବସି ଖୁସିରେ ଖାଅଇ
ଏକାମ ତା ନିତି ଦିନ
ମାଛରଙ୍କା ସିଏ ଜାଣ ...।୨।

# ବାୟା ଚଢ଼େଇ



ଖଜୁରୀ ଗଛକୁ ଚାହାଁରେ ମିତ
ବାଇଆ ଚଢ଼େଇ ଗାଉଛି ଗୀତ ।
ଦୂଃଖ ବୋଲି କିଛି ନାହିଁତ ତାହାର
ସବୁବେଳେ ଖୁସି ସଦା ସେ ଶାନ୍ତ ...।୦।

ଛୋଟିଆ ପକ୍ଷୀ ତା ଡ଼େଣା ଛୋଟଟି
ଛୋଟିଆ ମୁହଁରେ ଛୋଟ ଥଣ୍ଟି ।
ମାଟିଆ ଧୂସର ଦେହଟି ତାହାର
ଗଳାରେ ତାହାର କାଳିଆ ଛିଟ
ସବୁବେଳେ ଖୁସି ସଦା ସେ ଶାନ୍ତ ...।୧।

ଖାଏ ପୋକ ଚୋକ ମାଣ୍ଡିଆ ଧାନ
ଅଳସରେ କେବେ କାଟେନି ଦିନ ,
ଆପଣା କାମରେ ଘୁରି ବୁଲୁଥାଏ
ସକାଳରୁ ସଂଜ ବରଷା ଶୀତ
ସବୁବେଳେ ଖୁସି ସଦା ସେ ଶାନ୍ତ ...।୨।

ତାଳ ନଡ଼ିଆର ପତର ଚିରି
ଥଣ୍ଟେ ଆଣି ବସା କରେ ତିଆରି
ବାଆ ବତାସୀରେ ଝୁଲୁଥାଏ ସିଏ
ବସାଟି ତାହାର ବିଶ୍ୱ ବିଖ୍ୟାତ
ସବୁବେଳେ ଖୁସି ସଦା ସେ ଶାନ୍ତ ...। ୩।

# କାଉ



ମୁହଁ ଅନ୍ଧାରିଆ ପାହାନ୍ତି ପହରେ
ମଥାନ ଉପରେ ବସି
କାଆ କାଆ ଗୀତ ଗାଇ କହେ କାଉ
ଉଠ ହେ-ଜଗତ ବାସୀ
ରାତି ପାହିଲାଣି ଆସି ...।୦।

କାଉ ଡ଼ାକ ଶୁଣି ମାଅ ମୋର ଉଠେ
ତା ସହିତ ଉଠୁ ଆମେ
ତରବର ହୋଇ ଲାଗି ପଡ଼େ ମାଆ
ସକାଳର ବାସି କାମେ
ଯାହା ଭାତ ଡ଼ାଲି ଅଇଁଠା ଫିଙ୍ଗଇ
ତାକୁ ସିଏ ଖାଏ ବସି
ମଥାନ ଉପରେ ବସି ...।୧।

ଆମ ବାଡ଼ିପଟ ଆମ୍ବ ଡ଼ାଳେ ସିଏ
ବାନ୍ଧିଛି ତାହାର ବସା
ଝଡ଼ି ବରଷାରେ ଶୀତ କାକରରେ
କେହି ନାହିଁ ତା ଭରସା ।
ଠାକୁରେ କରନ୍ତୁ ଭଲରେ ସେ ଥାଉ
ସବୁବେଳେ ହୋଇ ଖୁସି
ମଥାନ ଉପରେ ବସି ...।୨।



## ବାଦୁଡ଼ି

ସଂଜ ଆକାଶରେ ଦଳ ଦଳ ହୋଇ
ଆସନ୍ତି କୁଆଡୁ ଉଡ଼ି ,
ଡ଼େଣାକୁ ଦେଖିଲେ ସତେକି ଶାଗୁଣା
ହେଲେ ସେ ପରା ବାଦୁଡ଼ି ...।୦।

ବାଡ଼ି ବଗିଚାରେ ଯାହାର ବା ଯେତେ
ଫଳିଥାଏ ଯାହା ଫଳ
ବାଛି ବାଛି କରି ଦରୋଟି ପାଚିଲା
କରନ୍ତି ସେ ନିରିମୂଳ ।
ଦ଼ରଖିଆ ଫଳ ପଡ଼ି ରହିଥାଏ
ଗଛ ଚାରିପଟ ବେଢ଼ି
ହେଲେ ସେ ପରା ବାଦୁଡ଼ି ...।୧।

ପର ଥାଇ ତାର ପକ୍ଷୀ ଜାତିରେ ସେ
ଗଣତି ହୁଅଇ ନାହିଁ।
ଅଣ୍ଡା ନ ଦେଇ ସେ ଛୁଆ ଦେଇଥାଏ
ତଥାପି ପଶୁ ନୁହଇଁ
ମାଉଁସ ତାହାର ଭାରି ଉପକାରୀ
ଧଇଁ ରୋଗଯାଏ ଛାଡ଼ି
ହେଲେ ସେ ପରା ବାଦୁଡ଼ି ...।୨।



## ଶାଗୁଣା

ଚିଲ ଠାରୁ ଟିକେ ବଡ଼ ପକ୍ଷୀଟିଏ
ଶାଗୁଣା ନାମଟି ତାର,
ବଡ଼ ବଡ଼ ତାର ଡ଼େଣା ଦୁଇଟିରେ
ଉଡ଼ିପାରେ ବହୁଦୂର ...।୦।

ରୂପଟି ତାହାର କଳା ଧଳା ମିଶା
ବେକ ଅଟେ ଲମ୍ବାଳିଆ,
ମୁଣ୍ଡଟି ଛୋଟିଆ ଥଣ୍ଟି ମୁନିଆଁ
ଟାଣୁଆ ସେ ବଙ୍କାଳିଆ ।
ବହୁ ଉଚ୍ଚା ଗଛ ଡ଼ାଳରେ ଯତନେ
ବାନ୍ଧିଥାଏ ବସା ଘର
ଶାଗୁଣା ନାମଟି ତା'ର ...।୧।

ଦେଖିବା ଶକତି ଅନେକ ତାହାର
ଆକାଶକୁ ଉଡ଼ିଯାଏ ,
ଯେଉଁଠାରେ ଥାଏ ମଡ଼ା ଶବ ସବୁ
ସେ ଠୁଁ ଦେଖି ଆସି ଖାଏ ।
ଆମ ପରିବେଶ ସଫା ରଖେ ସିଏ
କରେ ଆମ ଉପକାର
ଶାଗୁଣା ନାମଟି ତାର ...।୨।

## ପେଚା



ଚକା ଚକା ଆଖି ଛୋଟିଆ ନାକଟି
ଶୂନ ପରି ମୁହଁ ତାର
ବେକ ତାର ନାହିଁ ପେଚା ତାକୁ କହି
ଦେଖିଲେ ମାଡ଼ଇ ଡ଼ର ...।୦।

ଗହଳ ଡାଳରେ ଗଛ କୋରଡ଼ରେ
ବାନ୍ଧିଥାଏ ସିଏ ବସା ,
ଦିନରେ ସେ ସଦା ଲୁଚି ରହିଥାଏ
ପକ୍ଷୀଙ୍କର ତାକୁ ହିଂସା ।

ନିଶାଚର ସିଏ ରାତିରେ ବାହାରେ
ଖୋଜିବା ପାଇଁ ଆହାର
ଦେଖିଲେ ମାଡ଼ଇ ଡ଼ର ...।୧।

ଗଛର ଡ଼ାଳରେ, ମଥାନ ଉପରେ
କୁନ୍ଥେଇ ବୋବାଏ ସିଏ ,
ଅଶୁଭ ସୂଚନା ସେ ସୂରଟି ତାର
ଶୁଣି ପାରେ ତାକୁ ଯିଏ ।
ତଥାପି ସେ ପରା ଲକ୍ଷ୍ମୀଙ୍କ ବାହନ
ତାକୁ ମୋ କୋଟି ଜୁହାର
ଦେଖିଲେ ମାଡ଼ଇ ଡ଼ର ...।୨।



# କୋଚିଲା ଖାଇ

ବଡ଼ ଅଦଭୂତ ପକ୍ଷୀଟିଏ ସେହି
ନାଆଁ ତା କୋଚିଲାଖାଇ
ଘନ ଅରଣ୍ୟରେ ଶୀତ ବରଷାରେ
ଦୁଃଖେ ସୁଖେ ଥାଏ ରହି ...।୦।

ବିଷ ଫଳଟିଏ କୋଚିଲା ତା ନାମ
ତାକୁ ସେ ପକ୍ଷୀ ଖାଅଇ
ସେଥିପାଇଁ ଲୋକେ କହନ୍ତି ତାହାକୁ
କୋଚିଲା ଖାଇ ଚଢ଼େଇ ।
ତା ଥଣ୍ଟ ଉପରେ ଆଉ ଏକ ଥଣ୍ଟ
ରହିଥାଏ ଯୋଡ଼ି ହୋଇ
ନାଆଁ ତା କୋଚିଲା ଖାଇ ...।୧।

ସେ ପକ୍ଷୀର ମାଂସ, ହାଡ, ପର, ଗୋଡ଼
ଆମ ପାଇଁ ଦରକାରୀ
ଆଣ୍ଠୁ ଗଣ୍ଠି ବାତ ରୋଗରେ ଏସବୁ
ଅଟେ ଭାରି ଉପକାରୀ
ପକ୍ଷୀଟିଏ ସିନା ନୁହଁଇ ସୁନ୍ଦର
ଗୁଣରେ ସୁନ୍ଦର ସେହି
ନାଆଁ ତା କୋଚିଲା ଖାଇ ...।୨।



# କଜଳପାତି

ପତଳା ଦେହ କାଳିଆ ରୂପ
ଲମ୍ବା ତା ଲାଞ୍ଜଟିଏ ,
ଛୋଟିଆ ଥଣ୍ଟ ମଧୁର କଣ୍ଠ
କଜଳ ପାତି ସିଏ ...।୦।

ଦୁଇ ଡ଼େଣାରେ କେଡ଼େ ସୁନ୍ଦର
ଯାଏ ସେ ଉଡ଼ି ଉଡ଼ି
ବଡ଼ ମଜାରେ ଉଡ଼ା ପୋକକୁ
ଖାଅଇ ଥଣ୍ଟେ ଧରି ।
କାଉ ସହିତ ଖେଳ ତାହାର
ମନକୁ ମୋହିନିଏ
କଜଳ ପାତି ସିଏ ...।୧।

ଭାରି ଗହନ ଜାଗାରେ ସିଏ
ବାନ୍ଧଇ ତାର ବସା,
ଆପଣା ଦୁଃଖେ ସୁଖେ ସେ ଥାଏ
ନାହିଁ ତା ରାଗ ରଷା ।
ସଂଜ ସକାଳେ ତା ଗୀତ ଶୁଣି
ଭାବୁକ କବି ହୁଏ
କଜଳ ପାତି ସିଏ ...।୨।



## ଜଙ୍ଗଲ ସୁନ୍ଦରୀ

ପକ୍ଷୀଙ୍କ ଭିତରେ ସବୁଠୁଁ ସୁନ୍ଦର
ସିଏ ଜଙ୍ଗଲ ସୁନ୍ଦରୀ
ରୂପଟି ଯେମିତି ଗୁଣବି ସେମିତି
ଜଙ୍ଗଲର ସିଏ ପରୀ ...।୦।

ପିଠିଟି ତାହାର ଚିକ୍‌ଣ କାଳିଆ
ଡ଼େଣାରେ ହଳଦୀ ପଟି
ଉଡ଼ି ଯାଉଥିଲେ ଭାରି ସୁନ୍ଦରିଆ
ଆଖି ଲାଖିଯାଏ ସେଠି ।
''ହୁଇଚିରି'' ଗୀତ ତା ମଧୁର କଣ୍ଠେ
ମନକୁ କରଇ ଚୋରୀ
ଜଙ୍ଗଲର ସିଏ ପରୀ ...।୧।

ରଂଗ ବେରଙ୍ଗର ଫୁଲ ଫଳ ଯହିଁ
ଜଙ୍ଗଲ ଭିତରେ ଥାଏ,
ତା'କୁ ସିଏ ଖାଇ ତା ଦଳକୁ ନେଇ
ଆନନ୍ଦେ ସେଇଠି ରହେ ।
ବସାଟି ତାହାର ଆହୁରି ସୁନ୍ଦର
ସତେକି ମାଟି ପଥୁରି
ଜଙ୍ଗଲ ର ସିଏ ପରୀ ...।୨।

# ଚିଲ



ପୋଖରୀ କୂଳ ଗଛ ଡ଼ାଳରେ
ବସିଛି ଚିଲ ଚାହିଁ,
ଦେଖିଲେ ମାଛ ଖଞ୍ଚାରେ ତାକୁ
ଉଠେଇ ନେବା ପାଇଁ ...।୦।

ବଡ଼ ବଡ଼ ତା ଡ଼େଣା ଦୁଇଟି
ଛୋଟ ତାହାର ବେକ,
ମୁନିଆଁ ଥଣ୍ଟ, ନାଲିଆ ଆଖି
ମୁନିଆଁ ତାର ନଖ ।
ଅନେକ ଦୂରୁ ଦେଖି ପାରଇ
ଛଞ୍ଚାଣ ପରି ସେହି
ପୋଖରୀ କୂଳେ ଗଛ ଡ଼ାଳରେ
ବସିଛି ଚିଲ ଚାହିଁ ...।୧।

ଶଙ୍ଖ ଚିଲର ଦେହଟି ନାଲି
ଗଳାଟି ଶଙ୍ଖ ପରି
ମାଟିଆ ଚିଲ ମାଟିଆ ବୋଲି
ଅସୁନ୍ଦରିଆ ଭାରି ।
ମାଛଟି ପାଇଁ ଭାଗି ସେ ଉଙ୍କ
ଆକାଶେ ଉଡୁଥାଇ
ପୋଖରୀ କୂଳ ଗଛ ଡ଼ାଳରେ
ବସିଛି ଚିଲ ଚାହିଁ ...।୨।



## ଓଟ ପକ୍ଷୀ

ଭାରି ଲମ୍ୱା ଲମ୍ୱା ଗୋଡ଼ ଦୁଇଟି
ଲମ୍ୱା ଅଟେ ତାର ନଳି ବେକଟି
ଉଚ୍ଚତା ତାହାର ବାଜି ପାଞ୍ଚ ହାତ
ଓଟ ପକ୍ଷୀ ଅଟେ ତାର ନାଆଁଟି ...।୦।

ଦୁନିଆଁରେ ଯେତେ ପକ୍ଷୀ ଅଛନ୍ତି
ତାହା ଠାରୁ ବଡ଼ କେହି ନାହାନ୍ତି ।
ଓଜନରେ ଶହେ ଦେଢ଼ ଶହ କିଲୋ
ସତ କଥା ଏଇ ମିଛ ନୁହେଁଟି ...।୧।

ଉଡ଼ି ପାରେନା ସେ ପକ୍ଷୀଟି ହୋଇ
ପବନ ବେଗରେ ସେ ଦଉଡ଼ଇ ।
ନଖରେ, ଥଣ୍ଡରେ, ଡ଼େଣାରେ ତାହାର
ଯୁଦ୍ଧ କରେ ଶତ୍ରୁ ସହ ସିଏଟି ...।୨।

ଦଳ ଦଳ ହୋଇ ମରୁଭୂମିରେ
ଘର କରିଥାଏ ବୁଦା ଭିତରେ
ଏତେ ଏତେ ବଡ଼ ଅଣ୍ଡା ସେ ଦିଅଇ
ଗୋଟିକୁ ଚାରୋଟି ଲୋକ ଖାଆନ୍ତି
ଓଟ ପକ୍ଷୀ ଅଟେ ତାର ନାଆଁଟି ...।୩।



# କପୋତ

ଦେଖିବାକୁ ପାରା ପରି ପକ୍ଷୀଟିଏ
ନାମଟି ତାର କପୋତ
ଛୋଟିଆ ମୁଣ୍ଡରେ ଟିକି ଥଣ୍ଟିଏ
ଦେହଟି ପାରାଠୁଁ ଛୋଟ ...।୦।

ଏକୁଟିଆ ସିଏ କେବେବି ରହେନି
ସଦାବେଳେ ଦିଶେ ଯୋଡ଼ି
ଯୁଆଡ଼େ ଗଲେବି ଦୁହେଁ ସାଥି ହୋଇ
ସୁଖେ ଦୁଃଖେ ଥାନ୍ତି ବୁଡ଼ି ।
ଗହଳ ଡ଼ାଳରେ ବସାଟିଏ ବାନ୍ଧି
ଥାଆନ୍ତି ହୋଇ ଗୁପତ
ନାମଟି ତାର କପୋତ ...।୧।

ସୋରିଷ, ମାଣ୍ଡିଆ, ଗହମ ସେ ଖାଏ
ଖରା, ବରଷା କି ଶୀତ
ଗଛ ଡ଼ାଳେ ବସି ଘୁମୁରି ଗାଅଇ
ଉଠରେ ଉଠରେ ପୁତ ।
ପକ୍ଷୀଙ୍କ ଭିତରେ ଆଉ କେହି ନାହିଁ
ତା ପରି ସରଳ ଶାନ୍ତ
ନାମଟି ତାର କପୋତ ...।୨।

# କୁମ୍ଭାଟୁଆ

ପାରାଠୁ ଅଳପ ବଡ଼ ପକ୍ଷୀଟିଏ
ଲାଞ୍ଜ କଳା ଲମ୍ବାଳିଆ,
କଳା ମୂଚୁ ମୂଚୁ ପେଟ ଆଉ ବେକ
ନାଆଁ ତାର କୁମ୍ଭାଟୁଆ ...।୦।

ବାଉଁଶ ବଣରେ, ଶାହାଡ଼ା ଗଛରେ
ଗହଳ ବଣ ବୁଦାରେ,
କୁଟା କାଠି ଆଣି ବସା ବାନ୍ଧିଥାଏ
ଜନବସତିରୁ ଦୂରେ।
ଖାଏ ପୋକ, ଜୋକ ଖୋଜି ଦିନ ଡାକ,
ରଂଗଟି ତାର ଢ଼ାଉଆ
ନାଆଁ ତାର କୁମ୍ଭାଟୁଆ ...।୧।

ମୁନୀ, ଋଷି ମାନେ ଉଠିବା ଆଗରୁ
ସକାଳୁ ଉଠଇ ସିଏ,
ଜଗତବାସୀଙ୍କୁ ଶେଯ ଛାଡ଼ିବାକୁ
ଗୀତ ଗାଇ କହିଯାଏ।
ଗଛରୁ ଗଛକୁ ଉଡ଼ିଯିବା ବେଳେ
ଦିଶେ ଭାରି ସୁନ୍ଦରିଆ
ନାଆଁ ତାର କୁମ୍ଭାଟୁଆ ...।୨।

# ଢ଼ାଉକ

ପକ୍ଷୀଟିଏ, ତାର ଲମ୍ବା ଗୋଡ଼ ଦୁଇ
ବେକଟି ତା ବଗ ପରି,
ଥଣ୍ଟଟି ବି ଲମ୍ବା, ରୂପ କଳା ଧଳା
ଢ଼ାଉକ ନାମ ତାହାରି ...।୦।

ଦଳୁଆ ପୋଖରୀ, ଘଞ୍ଚ ବୁଦା ମୂଳେ
ବାନ୍ଧିଥାଏ ବସା ତାର,
ଏକୁଟିଆ କେବେ ରହେ ନାହିଁ ସିଏ
ସାଥେ ସଦା ପରିବାର ।
ଖାଏ ଛୋଟ ମାଛ, ନାନା ପୋକ ଜୋକ
ଡ଼ରୁଆ ସେ ଅଟେ ଭାରି
ଢ଼ାଉକ ନାମ ତାହାରି ...।୧।

ତା କଣ୍ଠର ସ୍ୱର ଭାରି ମଧୁରିଆ
ଗରିବର ଘଡ଼ି ସିଏ,
ସଂଜଠୁ ସକାଳ ପ୍ରତି ପ୍ରହରରେ
ଖୁସିରେ ସେ ଗୀତ ଗାଏ ।
ସାପ, କଟାଶକୁ ଭାରି ଡ଼ର ତାର
କାଳେ ତାକୁ ଦେବେ ମାରି
ଢ଼ାଉକ ନାମ ତାହାରି ...।୨।

# ଗେଣ୍ଡାଳିଆ

ଶାଗୁଣାଟି ପରି ବଡ଼ ପକ୍ଷୀଟିଏ
ଲମ୍ବା ଲମ୍ବା ଗୋଡ଼ ଦୁଇ,
ବଡ଼ଟି ତା ଥଣ୍ଟ ବଡ଼ବି ତା ବେକ
ଗେଣ୍ଡାଳିଆ ଅଟେ ସେହି ...।୦।

ରୂପଟି ତାହାର କଳା ଧଳା ମିଶା
ଲାଞ୍ଜରେ କାଳିଆ ଗାର,
ଡ଼େଣାରେ ସତେକି ଚିତା ପଡ଼ିଅଛି
ଉଡ଼ିଲେ ଦିଶେ ସୁନ୍ଦର।
ଉଚ୍ଚାଳିଆ ଗଛେ ବସା ବାନ୍ଧି ସିଏ
ଆନନ୍ଦରେ ଥାଏ ରହି
ଗେଣ୍ଡାଳିଆ ଅଟେ ସେହି ...।୧।

ପାଣି କୂଳେ କୂଳେ ବୁଲୁଥାଏ ସିଏ
ଖାଅଇ ଗେଣ୍ଡା ଶାମୁକା,
ପଡ଼ିଆ କ୍ଷେତରେ ଖୋଜୁଥାଏ ପୁଣି
ଜୋକ ଚିଆ ଓ ଝିଣ୍ଟିକା।
ଜୀବନରେ ତାର,କାହାରିବା କେବେ
ଅପକାର କରେ ନାହିଁ
ଗେଣ୍ଡାଳିଆ ଅଟେ ସେହି ...।୨।



## ହଳଦୀ ବସନ୍ତ

ଛୋଟ ଚଢ଼େଇଟି ହଳଦୀ ବସନ୍ତ
ଦେଖିବାକୁ ବଣି ପରି,
ମୁହଁଟି କାଳିଆ ଦେହ ହଳଦୀଆ
ସୁନ୍ଦର ଦିଶଇ ଭାରି ...।୦।

ଲାଞ୍ଜର ଅଗରେ, ଡେ଼ଣା ଦୁଇଟିରେ
କଳା ମୁଚୁ ମୁଚୁ ଗାର,
ଗଛ ଡ଼ାଳେ ବସି ଗୀତ ଗାଉଥିଲେ
ମଜା ଲାଗେ ଶୁଣି ସ୍ୱର ।
ସବୁ ଋତୁରେ ସେ ସବୁଠି ଦିଶଇ
କବି ମନ କରେ ଚୋରୀ
ସୁନ୍ଦର ଦିଶଇ ଭାରି ...।୧।

ରହଇ ଗଛରେ ବସା ବାନ୍ଧି ସିଏ
ଖାଏ ପୋକ ଜୋକ ମାନ,
ବଡ଼ି ସକାଳରୁ ନିଦରୁ ଉଠଇ
ସଦା ତା ହରଷ ମନ ।
ତା ମୁହଁ ଦେଖିଲେ ଶୁଭଫଳ ମିଳେ
ସିଏ ଆମ ହିତକାରୀ
ସୁନ୍ଦର ଦିଶଇ ଭାରି ...।୨।



# ଗରୁଡ଼ ପକ୍ଷୀ

ପକ୍ଷୀ ଭିତରେ ଭାରି ଶିକାରୀ
ଗରୁଡ଼ ନାମ ତାର ,
ଚିଲ ପରିକା ଦେଖିବାକୁ ସେ
ଆହୁରି ଭୟଙ୍କର ...।୦।

ରଂଗ ତାହାର ଡ଼ାଉଆ ନାଲି
ନାଲି ତା ଆଖି ଦୁଇ,
ଥଣ୍ଟି ତାର ଧାରୁଆ , ବଙ୍କା
ଭାରି ଟାଣୁଆ ସେହି ।
ଲୋମରେ ଭରା ଗୋଡ଼ ଦୁଇଟି
ନଖ ତା ଭଲୁକର
ଗରୁଡ଼ ନାମ ତାର ...।୧।

ବହୁ ଦୂରରୁ ଭଲ ଭାବରେ
ଦେଖି ପାରଇ ସିଏ,
ଗୋଧି, ଠେକୁଆ , କୁକୁଡ଼ା ସାପ
ଉଠେଇ ନେଇ ଖାଏ ।
ବହୁତ ଉଚ୍ଚା ଗଛ ଡ଼ାଳରେ
ବାନ୍ଧେ ସେ ବସାଘର
ଗରୁଡ଼ ନାମ ତାର ...।୨।



**ଶ୍ରୀ ବୀରକିଶୋର ନାୟକ** (ଶାବର କବି )

ଆକାଶବାଣୀ ଗୀତିକାର

ଜନ୍ମ - ତା ୨୭.୦୧.୧୯୫୨


**ଯୋଗାଯୋଗ ଠିକଣା**

ଘର ନଂ - ଏଲ୍ ୩୫୩

ଏଚ୍.ଏ.ଏଲ୍ ଟାଉନସିପ୍

ସୁନାବେଡା - ୭୬୩୦୦୨

କୋରାପୁଟ

ଫୋନ୍ - ୦୬୮୫୩ - ୨୨୧୭୦୬, ୯୪୩୭୧୬୫୫୨୯


**ଏଯାବତ୍ ପ୍ରକାଶିତ ପୁସ୍ତକ**

ଜ୍ଞାଣ ସୁଧା (ଭକ୍ତି ସଂଗୀତ)

ଭକ୍ତି ମଞ୍ଜୁଷା (ଭକ୍ତି ସଂଗୀତ)

ଭକ୍ତି ରସାମୃତ (ଭକ୍ତି ସଂଗୀତ)

ତାରାଫୁଲ ( ଶିଶୁ ସଂଗୀତ)

ବୋଉ ( ଶିଶୁ ସଂଗୀତ)